(ସପ୍ତଶଯ୍ୟା)

# ସପ୍ତର୍ଷି ମଣ୍ଡଳ

(ଉତ୍କଳ ସତ୍ସଂସମାଜ ତରଫରୁ)



ପ୍ରକାଶକ
ଶ୍ରୀ ଦୁଃଖବନ୍ଧୁ ନାୟକ, ବି. ଏ. ବି. ଏଲ୍
କାମାକ୍ଷାନଗର



**ସପ୍ତର୍ଷି ମଣ୍ଡଳ** | **ଉତ୍କଳ ସତ୍ୟ ସମାଜ**

ଶ୍ରୀ ଜାନକୀ ବଲ୍ଲଭ ବିଜୟତେ | ଗୁରୁକୁଳ ଆଶ୍ରମ
ଓଁ ସତ୍ୟମେବ ଜୟତେ | ପୋ: ଅ: ସପ୍ତଶଯ୍ୟା
ତା ୧୦ । ୧୨ । ୬୭ | ଜି ଢେଙ୍କାନାଳ

ସପ୍ତର୍ଷି ମଣ୍ଡଳ - ଅନ୍ତର୍ଗତ ସମସ୍ତ ଗ୍ରାମବାସୀ ଭାଇମାନେ !

ଉକ୍ତ ପୁସ୍ତକ ଲିଖିତ ସମସ୍ତ ବିଷୟ ପ୍ରଚାର ପାଇଁ ସପ୍ତର୍ଷି ମଣ୍ଡଳ ଅନ୍ତର୍ଗତ ଗ୍ରାମ ମାନଙ୍କରେ ବିନାମୂଲ୍ୟରେ ବିତରଣ କରି ଦିବା ନିମିତ୍ତ ଆମ୍ଭେ ଅନୁମତି ଦେଲୁଁ ଏବଂ ସମସ୍ତ ଗ୍ରାମବାସୀ ଭାଇମାନଙ୍କୁ ନିବେଦନ କରୁଛି, ନିଜନିଜ ଗାଁର ଉନ୍ନତି ପାଇଁ ସମସ୍ତେ ଧର୍ମ ମାର୍ଗପ୍ରତି ଦୃଷ୍ଟି ରଖି କର୍ମ କ୍ଷେତ୍ରରେ ଲାଗି ରହନ୍ତୁ ! ନିଜ ଗାଁ କଳି ନିଜ ଗାଁରେ ତୁଟାଇ ଦିଅନ୍ତୁ । କଳି ଯୁଗର ପ୍ରାଦୁର୍ଭାବରୁ ଉଦ୍ଧାର ପାଇବା ନିମିତ୍ତ ଗ୍ରାମେ-ଗ୍ରାମେ ନାମ ସଂକୀର୍ତ୍ତନ, ପୁରାଣପଠନ, ନାମ ଯଜ୍ଞ, ଯେପରି ପୂର୍ବରୁ ଆମ ସମାଜରେ ପ୍ରଚଳିତ ଅଛି ସେପରି ଚଳୁଥାଉ । ପ୍ରତି ସଂକ୍ରାନ୍ତି ଦିନ କିମ୍ବା ପୂର୍ଣ୍ଣିମା ଦିନ ରାତ୍ରରେ ଗ୍ରାମବାସୀ ଭାଇମାନେ ଏକତ୍ର ହୋଇ ଗୀତା, ଭାଗବତ ଚର୍ଚ୍ଚା କରନ୍ତୁ । ସପ୍ତଶଯ୍ୟାର ଉନ୍ନତି କଳ୍ପେ ସମସ୍ତ ଗ୍ରାମବାସୀ ଭାଇମାନେ ବିଚାର କରି ଯଥା ଶକ୍ତି ସାହାଯ୍ୟ କରନ୍ତୁ ।

ଭଗବତ ପ୍ରେମୀମାନଙ୍କୁ ଆମ୍ଭର ଅନୁରୋଧ ଯେ, ଉତ୍କଳ ସତ୍ୟ ସମାଜକୁ ଦୃଢ଼ିଭୂତ କରିବା ପାଇଁ ଉକ୍ତ ଅନୁଷ୍ଠାନରେ ଯୋଗଦାନ କରନ୍ତୁ । ଶେଷରେ ଶ୍ରୀ ଭଗବାନଙ୍କ ନିକଟରେ ଏତିକି ପ୍ରାର୍ଥନା ଯେ ତୁରନ୍ତ ସତ୍ୟ, ନ୍ୟାୟ, ଧର୍ମର ବିକାଶ ହେଉ । ଇତି ।

ଆପଣଙ୍କର

**ଶ୍ରୀ ଅଦ୍ୱୈତ ଚରଣ ଦାସ, ଏମ୍. ଏ. ବି. ଏଲ୍**
ସଭାପତି, ଉତ୍କଳ ସତ୍ୟ ସମାଜ

ଓଁ

## ଶ୍ରୀ ଜାନକୀ ବଲ୍ଲଭ ବିଜୟତେ

ଓଁ ଲଲାଟ ଦେଶୋଜ୍ୱଳ ବାଲ ଭୂଷଣଂ
ସଚାଣ୍ଡ୍ରବଂ ବ୍ୟାଘ୍ର ନ ଖାକଂ କନ୍ଧରଂ ।
ଦିଗମ୍ବରଂ ଶୋଭିତଂ ବର୍ବ ଗଳଙ୍କ
ଶ୍ରୀ ବାଲରାମଂ ସିରସା ନମାମି
ଶ୍ରୀ ରାମଂ ପାତୁ ସର୍ବଦା ।

ସପ୍ତର୍ଷି ମଣ୍ଡଳସ୍ଥିତ ଗ୍ରାମର ଯେ କୌଣସି ବ୍ୟକ୍ତି ଏହି ପୁସ୍ତକ ଖଣ୍ଡି ପାଇବା ସଙ୍ଗେ ସଙ୍ଗେ ଗ୍ରାମର ସମସ୍ତ ଭାଇମାନଙ୍କୁ ଏକତ୍ର କରାଇ ପଢ଼ି ଶୁଣାଇ ଦେବେ । ଏହା ପ୍ରଭୁଙ୍କ କାମ ଏଥିରେ ହେଳା କରିବା ଓ ପାଳନ ନ କରିବା ଅପରାଧ ଅଟେ ।

## ସପ୍ତର୍ଷ ମଣ୍ଡଳ ସୀମାରେଖା



# ସପ୍ତର୍ଷି ମଣ୍ଡଳ

ପରମ ପିତା ଶ୍ରୀ ଭଗବାନ୍, ଯାହାଙ୍କର ଅପାର କରୁଣା, କୃପା ଓ ଇଙ୍ଗିତରେ ଏ ବିଶ୍ୱ ଚାଳିତ । ତାଙ୍କ କଥା କେବଳ ତାଙ୍କୁହିଁ ଜଣା । ଜୀବ ଜଗତର କଲ୍ୟାଣ ସାଧନ ପାଇଁ, ସତ୍ୟ ସାଧକ ମୁନି ଋଷି ମାନେ, ବେଦ, ବେଦାନ୍ତ, ଉପନିଷଦ ଗୀତା, ଭାଗବତ, ଶାସ୍ତ୍ର ପୁରାଣ ମାନଙ୍କରେ, ଭଗବାନଙ୍କ ସମ୍ବନ୍ଧରେ ଅନେକ ତଥ୍ୟ ଲେଖି ଯାଇଛନ୍ତି । ଯେ ଯେତିକି ଅନୁଭବ କରିପାରିବେ, ସେ ସେତିକି ବୁଝିପାରିବେ ।

ଏ ସଂସାର ଗୋଟିଏ ରଣସ୍ଥଳି । ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଆମମାନଙ୍କୁ ସଂଗ୍ରାମ କରିବାକୁ ପଡ଼ୁଅଛି । ଯେଉଁମାନେ ଉପଯୁକ୍ତ କର୍ମ ଓ ଧର୍ମମାର୍ଗ ଅନ୍ୱେଷଣ କରି ସଂସାର ପଥରେ ଚାଲିଛନ୍ତି ସେମାନେ ପ୍ରକୃତ ସୁଖ ଓ ଶେଷରେ ଅତି ଭଲରେ ଏ ସଂସାରରୁ ବିଦାୟ ହୋଇଛନ୍ତି । ଯେଉଁମାନେ ଶାସ୍ତ୍ର ବାଣୀ ଏଡ଼ିଦେଇ କୁମାର୍ଗରେ ଗତି କରିଛନ୍ତି ସେମାନେ ଶେଷରେ ଦ୍ୱନ୍ଦରେ ପଡ଼ି ଦୁଃଖରେ କାଳକାଟି ସଂସାରରୁ ବିଦାୟ ନେଇଛନ୍ତି । ଏହା ଶୁଣିବା କଥା

ନୁହେଁ, ଦେଖିବା କଥା । ପରନ୍ତୁ ସେ ଯାହାର କର୍ମଫଳ ଓ ବାସନା ନେଇ ଇହଜଗତରେ ଜନ୍ମଲାଭ କରନ୍ତି । 'ପୁନରପି ଜନନଂ ପୁନରପି ମରଣଂ ପୁନରପି ଜନନୀ ଜଠରେ ଶୟନଂ' ଏହିପରି ଜନ୍ମମୃତ୍ୟୁ ଧାରାବାହିକ ଭାବରେ ଚାଲିଛି ।

ଏ ସଂସାର ଆଜି କାଲିର ନୁହେଁ । କେଉଁ ଦିନ ଆରମ୍ଭ ହୋଇଛି ଓ କେଉଁ ଦିନ ଶେଷ ହେବ ତାହା ସ୍ରଷ୍ଟାଙ୍କୁ ଜଣା । ଶାସ୍ତ୍ର ପୁରାଣ ମାନଙ୍କରୁ ଦେଖିବାକୁ ମିଳେ ସତ୍ୟଯୁଗ ବା ଆଦିମ ଯୁଗରୁ ଏ ପୃଥିବୀରେ ଯୁଦ୍ଧ, କନ୍ଦଳ, ଠୋଲି, ମରୁଡ଼ି, ଦୁର୍ଭିକ୍ଷ, ରୋଗ, ଶୋକ, ଦୁଃଖ, ଯନ୍ତ୍ରଣା, ଜନ୍ମ, ମୃତ୍ୟୁ ଲାଗି ରହିଛି । ଦେବ ଦାନବ ମାନଙ୍କ ମଧ୍ୟରେ ଯୁଦ୍ଧ ଲାଗି ରହିଛି (ରାମ ରାବଣ ଯୁଦ୍ଧ) ଯେ ତେବେଳେ ଦେବତାମାନେ ସୁଖ ସମ୍ଭୋଗରେ ରହି ନିଜ ନିଜର ମାର୍ଗ ବଣା ହୋଇ ଥାନ୍ତି ସେତେବେଳେ ଦାନବମାନେ ଏହି ସୁବିଧା ସୁଯୋଗ ନେଇ ପୃଥିବୀରେ ନାନାପ୍ରକାର ଅପକର୍ମ, ଉତ୍ପାତ ଘଟାଇଥାନ୍ତି । ପୁନଶ୍ଚ ଦେବତାମାନେ ଦାନବମାନଙ୍କ ଦ୍ୱାରା ପିଡ଼ାଗ୍ରସ୍ତ ହୋଇ ପ୍ରଭୁଙ୍କ ଶରଣ ପ୍ରାର୍ଥୀ ହେଲେ, ପ୍ରଭୁ ବିଭିନ୍ନ ଅବତାର ନେଇ ପୃଥିବୀରେ ଜନ୍ମ ଗ୍ରହଣ କରି ଦେବତା ମାନଙ୍କୁ ଉପଯୁକ୍ତ ପଥ ଦେଖାଇବା ସଙ୍ଗେ ସଙ୍ଗେ ଦାନବମାନଙ୍କୁ ସଂହାର କରିଛନ୍ତି । ବର୍ତ୍ତମାନ ସମାଜରେ ଆମ-ମାନଙ୍କର କର୍ମ ଦାନବମାନଙ୍କ କର୍ମ ଅପେକ୍ଷା ଅଧିକ ହେଉ ଥିବାର ପରି ଲକ୍ଷିତ ହୁଏ । ବର୍ତ୍ତମାନ ପୁରୁଣା ପୋଥି ଓ ମାଳିକା ମାନଙ୍କରୁ ଦେଶର ଭବିଷ୍ୟତ ସମ୍ବନ୍ଧେ ଅନେକ କଥା ଦେଖିବାକୁ ମିଳେ । ଭଗବତ ପ୍ରେମୀ ଭାଇମାନେ ଉକ୍ତ ଲେଖାର ଗୁଢ଼ ତତ୍ତ୍ୱ ଅନୁସନ୍ଧାନ କରିଛନ୍ତି ସେମାନେ ନିଶ୍ଚୟ ଉପଲବ୍ଧି କରି ପାରୁଥିବେ

ଭଲମନ୍ଦ ସୁଖ ଦୁଃଖ, ଦିନ ରାତି ସବୁ ଦୁଇକଥା । ଏ ଜଗତ ମଧ୍ୟ ଦୁଇଟି । ୧ମଟି ପାର୍ଥିବ ଜଗତ, ୨ୟଟି ହେଲେ ଆଧ୍ୟାତ୍ମିକ । ଜଗତ । ଯେଉଁମାନେ ପାର୍ଥିବ ଜଗତ ପ୍ରତି ଆଶକ୍ତ ସେମାନଙ୍କର, ଘର ଦ୍ୱାର; ପୁଅ ନାତି, ଜମି, ଜମା, ବନ୍ଧୁବାନ୍ଧବ, ଧନ ସମ୍ପତ୍ତି ଚିନ୍ତା ଲାଗି ରହିଛି । ଯେଉଁମାନଙ୍କର ଆଧ୍ୟାତ୍ମିକ ଚିନ୍ତାଧାରା ଅଛି ସେମାନେ ନଖାଇ ନପିଇ, ବଣ ଜଙ୍ଗଲ ବୁଲି ଖରା ବର୍ଷା ଶୀତ କାକର ସହି ଏ ଭବ ସଂସାରରୁ ଉଦ୍ଧାର ହେବାପାଇଁ ଭଗବତ ଚିନ୍ତା କରିଥାନ୍ତି ।

ଅନେକ ସଂସାର ବନ୍ଧନରେ ଥାଇ ମଧ୍ୟ ସତ ଚିନ୍ତା, ସତକର୍ମ ଓ ଭଗବତ ଚିନ୍ତା କରିଥାନ୍ତି କିନ୍ତୁ ବର୍ତ୍ତମାନ ସମାଜର ସବୁ ସ୍ତରରେ ଆମମାନଙ୍କ ମଧ୍ୟରୁ ଅଧିକ ଲୋକ ଅସତ କର୍ମରେ ଲିପ୍ତ ରହୁ ଥିବାରୁ ପ୍ରଭୁଙ୍କ ପ୍ରତି ବିଶ୍ୱାସ ରହୁନାହିଁ । ମନ ସ୍ୱଚ୍ଛ ରହୁନାହିଁ । ମନର ବଳ କମିଯାଉଛି । ନାନା ପ୍ରକାର ଅଧର୍ମ, ଅନନ୍ତ ଚିନ୍ତା ମନ ମଧ୍ୟରେ ପ୍ରବେଶ କରୁଛି ଫଳରେ ନାନାପ୍ରକାର ଅପକର୍ମ ସମାଜରେ ଦେଖା ଦେଲାଣି । ଶାସ୍ତ୍ର କହନ୍ତି—

ଧର୍ମଃସଙ୍କୁଚିତଃ, ତପୋ ବିରହିତଂ
ସତ୍ୟଂଚ ଦୂରଂଗତ
ଲୋକାଧର୍ମହତା, ଦ୍ୱିଜାଷ୍ଟ ଲୋଭିତା
ନାରୀବଶା ମାନବା ।

ନିର୍ବୀର୍ଯ୍ୟା ପୃଥିବୀ ନିରୌଷଧି ରସା
ମୀଣ୍ଟ ମହତ୍ୱଂ ଗତାଃ
ଭୂପାଳାନିଜ ଧର୍ମ କର୍ମ ରହିତା
ବିପ୍ରା କୁମାର୍ଗଂ ଗତା ।

ଭର୍ଯ୍ୟା ଭର୍ତ୍ତ୍ରୀଁ ବରେଧର୍ମା ପରରତା

ପୁନ ପିତୃ ଦ୍ରୁହିଣଃ

ହାକଷ୍ଟଂ ଖଳୁଭବେତ କଳପୁଚର

ଧନ୍ୟାନସ୍ତପେ ମୃତାଃ,

ଆଦ୍ଭୁତମଧ ଶାସ୍ତ୍ରମାନଙ୍କରେ ଉଲ୍ଲେଖ ଅଛି ।—

ସତ୍ୟଯୁଗରେ ଚତୁଷ୍ପାଦ ଧର୍ମ, ତ୍ରେତୟାକୁ ଏକ କମିଲା ଜାଣ
ଦ୍ୱାପରରେ ଦୁଇ କଳିରେ ଏକ, ତେଣୁ ଅଧର୍ମ ଘୋଟିଛି ମୁଳକ

ଏହି କାରଣରୁ-କଳିଯୁଗ ପ୍ରାଣୀ ଶକତି ହୀନ ଦୁର୍ବଳ ଶରୀର ଦୁର୍ବଳମନ
ମହତ ଭାବନା ଧରିବା ପାଇଁ, ଶକତି ଅଭାବେ ହୁଅନ୍ତି ନାହିଁ ।
ଯେତେ ବୁଦ୍ଧି ଭାବ ହୋଇଲେ ଜଣା, ତାହାକୁ ନ ଆସଇ ପ୍ରଭୁ ଧାରଣା ।
ଏହା କଳିଯୁଗରେ ଟେବବୋଲି ପ୍ରମାଣ ଅଛି, କଳି କାଳ ସ୍ୱରୂପ,
ସମସ୍ତଙ୍କୁ ଗ୍ରାସ କରିଯିବ ।

କଳି ପଶି ଘରେ ଘରେ କରୁଅଛି ନାଟ
ବୁଝି ନ ପାରି ମାନବେ ହେଯାନ୍ତି ଛଟପଟ ।
କଳିଆସି ହୃଦେ ହୃଦେ ବାନ୍ଧିଯିବ ବସା
ଚକ୍ଷୁ ଥାଇ ଅନ୍ଧପରି ହୋଇବେ ମନୁଷ ।
ଲଗାଇ ହାଟ ଚମଟ, ଫିଟାଇ ନୂଆ ବାଟ
ସବୁରି ଗୃହେ କନ୍ଦଳ ଲଗାଇ ଦେବେ ନାଟ ।
ଜାଣି ଅଜଣା ପରି ଥିବେଟି ସର୍ବେ ଗୃହି,
କେହି କାହା କଥାକୁ ବୁଝି ପାରିବେ ନାହିଁ ।
ନ କହିଲା ଜନ ସଭାରେ ବସି କହିବେ କଥା

ଏ ସ୍ଥଳ ଜନେ ତନକୁ ଗ୍ରହିଁ ଛୋଡ଼ିବେ ମଥା ।
ବୁଦ୍ଧି ବିବେକ ହରାଇ ବଡ଼ ବଡ଼ ମୁଣ୍ଡେ
ପାଗଳ ପରାୟେ ହୋଇ ବୁଲୁଥିବେ ଦାଣ୍ଡେ ।
ଧର୍ମକୁ ନିନ୍ଦିବେ ହେବ ଅଶାନ୍ତି ପ୍ରବଳ
ମଧ୍ୟାହ୍ନରେ ଖଣ୍ଡେ ଅନ୍ଧ ହେବେ ମେଳ ମେଳ
କଳିଗ୍ରାସ ହୋଇଯିବ ଏ ସାରା ପୃଥିକ
ବାମ ପୁଅକୁ ଦେଖିବ ଯେତ୍କେ ଅଚେର ପ୍ରାଣୀକ ।
ସାମାନ୍ୟ କଥାରେ ଦେଶେ ବାଜିବ ଯୁଦ୍ଧ ନାଗର
ଉତ୍ତମାଚ ଭେଦା ଭେଦ ନଥିବ ପୃଥିସାରା ।

ଉପରୋକ୍ତ ଲେଖାମାନଙ୍କରୁ ବର୍ତ୍ତମାନ ଅନେକ ଦେଖିବାକୁ ମିଳୁଅଛି । ଅନେକ କଥା ଶୁଣିବାକୁ ମିଳେ । ଭବିଷ୍ୟ ମାଳିକାବର୍ଣ୍ଣିତ ବିଷୟ ଯାହାକିଛି ଅବଶ୍ୟ ଘଟିବ, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ଅନେକ କ୍ଷେତ୍ରରେ ମହାପୁରୁଷମାନେ କହିଛନ୍ତି— ପୃଥିବୀର ୪କୋଣ ମଧ୍ୟରୁ, ଏକ କୋଣ, ବର୍ଷା ଅଭାବରେ ଫସଲ ନଷ୍ଟ ହେବ ଓ ମରୁଡ଼ି ହେବ । ଏକକୋଣ ଅଧିକ ବର୍ଷା ବାତ୍ୟା ଦ୍ୱାରା ଧନ ଜୀବନ ଓ ଫସଲ ନଷ୍ଟହେବ, ଅନ୍ୟ ଏକ କୋଣ ରୌଦ୍ର ତାପ ଓ କୀଟ ପତଙ୍ଗ ମାନଙ୍କ ଦ୍ୱାରା ନଷ୍ଟ ହେବା ପରେ ଯାହାକିଛି ଅଳ୍ପ ହେବ, ତାହା ପରସ୍ପର ଦେଶ ମାନଙ୍କରେ ଆଦାନ ପ୍ରଦାନ ହୋଇଯିବ, ୩କୋଣ ଏପରି ଗଲେ ଆଉ ଏକ କୋଣର ଫସଲ, ୪ କୋଣ ଲୋକମାନେ ବାଣ୍ଟି ଖାଇବେ ଏଣୁ ଦେଶରେ ଖାଦ୍ୟ ଅନାଟନ ରହିବ । ସନ ୧୯୬୭ ମସିହାଠାରୁ ସନ ୧୯୮୦ ମସିହା ପର୍ଯ୍ୟନ୍ତ ଦେଶରେ ଏପରି ଦୁର୍ଗତି ଲାଗି ରହିବାର ସମ୍ଭାବନା ଅଛି । ଆମର ମହାମନିଷିମାନେ, ଆମେମାନେ ଏଭଳି ସଂସାରରୁ ଉଦ୍ଧାର ହେବା ଲାଗି ଅମ୍ଭମାନଙ୍କୁ ଉପଦେଶ ଦେଇଥିବେ

ଯିବା ପାଇଁ ଅନେକ ସୁଗମ ପନ୍ଥା ତଥା ପ୍ରଭୁଙ୍କର ସେବା, ପୂଜା, ଗୀତ, କାନ୍ତ ସ୍ମରଣ, ଭଜନ, କୀର୍ତ୍ତନ ଇତ୍ୟାଦି ଅନେକ ପ୍ରକାରେ ପଥ ଦେଖାଇ ଦେଇଯାଇଛନ୍ତି । ତଥାପି କଳିଯୁଗ ପ୍ରାଣୀମାନଙ୍କ ପକ୍ଷରେ ଏହାକେତେ ଦୂର ସମ୍ଭବ ହେବ କି ନାହିଁ ମନେକରି ଚୈତନ୍ୟଦେବ ଶେଷରେ କର୍ମ ସହିତ ନାମ କୀର୍ତ୍ତନ ପନ୍ଥା କହି ଯାଇଛନ୍ତି । ତାଙ୍କର ଉକ୍ତି "ହରେର୍ନାମ, ହରେର୍ନାମ, ହରେର୍ନାମୈବ କେବଳମ୍ କଳୌ ନାସ୍ତ୍ୟେବ, ନାସ୍ତ୍ୟେବ, ନାସ୍ତ୍ୟେବ ଗତିରନ୍ୟଥା" ଏହି ନାମ ବଳରେ ଚୈତନ୍ୟ ଦେବ ସନାତନ ଧର୍ମକୁ ଅକ୍ଷୁର୍ଣ୍ଣ ରଖିଯାଇଛନ୍ତି ।

ଜୀବ ଜଗତରେ ମାନବ ଶ୍ରେଷ୍ଠ ବୁଦ୍ଧି ବିବେକ, ବିଚାର ଓ ଜ୍ଞାନବଳରେ ସଂସାରରେ ସମସ୍ତ ପଦାର୍ଥକୁ ଆୟତ୍ତ କରି ରଖି ପାରିଛି । ମାନବସମାଜର ଦୁଇଟି ଉପାଦେୟ କଥା ଗୋଟିଏ ହେଲା 'ଉଦ୍ଦେଶ୍ୟ' ଏବଂ ଅନ୍ୟଟି "ଲକ୍ଷ" ଯାହାକି ସୃଷ୍ଟିରେ ଅନ୍ୟ ଜୀବ, ଜନ୍ତୁ, କୀଟ, ପତଙ୍ଗ, ତରୁ ଲତାମାନଙ୍କର ଉଦ୍ଦେଶ୍ୟ ବ୍ୟତୀତ ଦିଶିପୁ କଥା "ଲକ୍ଷଟି" ନାହିଁ । ଉଦାହରଣ ସ୍ୱରୂପ—ପିଲାମାନେ ଖେଳିବାକୁ ଯାଆନ୍ତି । ଉଦ୍ଦେଶ୍ୟ ହେଲା—ଖେଳିଲେ ସ୍ୱାସ୍ଥ୍ୟ ଭଲ ରହିବ, ମନ ଫୁର୍ତ୍ତି ରହିବ । କିନ୍ତୁ କିଛି ସମୟ ଖେଳିଲା ପରେ, ଖେଳରେ କିପରି ଜିତିବେ ଏହା ହେଲା ଲକ୍ଷ୍ୟ ଆମର ଉଦ୍ଦେଶ୍ୟ ହେଲା ସଂସାରରେ ଘର ଦ୍ୱାର ଜମି ଜମା ନେଇ କର୍ମକରି କିପରି ସୁଖରେ କାଳାତିପାତ କରିବା ଏବଂ ଲକ୍ଷ୍ୟହେଲା ଭଗବତ୍ ଚିନ୍ତା କରି କିପରି ଭବ ସଂସାରରୁ ଉଦ୍ଧାର ହେବା ମାତ୍ର ଲକ୍ଷ୍ୟ ଯାହା ହେବା କଥା ତା ପ୍ରତି ଆମର ଭ୍ରୂକ୍ଷେପ ନାହିଁ । ଲକ୍ଷକୁ ଉଦ୍ଦେଶ୍ୟ ଭିତରେ ପୂରାଇ, କେବଳ ଉଦ୍ଦେଶ୍ୟ ସାଧନରେ ଦିନ ଗତି ଲାଗି ପଡ଼ିଅଛୁ । ଭଗବତ୍ ପଥ ତଥା ଲକ୍ଷ୍ୟ ପଥ ରୋଧ ହେବା ଫଳରେ ବର୍ତ୍ତମାନ ସମାଜରେ ଭଗବତ୍

ଚିନ୍ତା ନାହିଁ । ଏଣୁ ସମାଜରେ ନାନା ପ୍ରକାର ଅବନତି ପଶିଗଲାଣି । ଏବଂ ଆମ୍ଭେମାନେ ଦୁର୍ଦ୍ଦଶାଗ୍ରସ୍ତ ହୋଇଅଛୁ । ଯେପରି ଗୋଟିଏ ପାଣି-ବନ୍ଧ ମଧ୍ୟରେ ସାମାନ୍ୟ ଛିଦ୍ରଟିଏ ରହିଲେ କ୍ରମେ ଏହା ବଡ଼ ହୋଇ, ବନ୍ଧ ଭାଙ୍ଗି ପକାଏ ଓ ପାଣି ଗୁଳିଯାଏ । ଏବଂ ଯେପରି ଡଙ୍ଗାରେ ସାମାନ୍ୟ କଣାଟିଏ ଥିଲେ ଅଳ୍ପେ ଅଳ୍ପେ ପାଣି ଭର୍ତ୍ତି ହୋଇ ଡଙ୍ଗାଟି ବୁଡ଼ିଯାଏ । ସେହିପରି ଆମ ଅସତ୍ କର୍ମଫଳ କ୍ରମେ— ବଢ଼ି ବଢ଼ି ଶେଷରେ ଆମକୁ କାଳ ଡଙ୍ଗାରେ ବସାଇ ବୁଡ଼ାଇ ମାରିଦେବ ଏଥିରେ ସନ୍ଦେହ ନାହିଁ । କିନ୍ତୁ ମାନବ ଜୀବନର ଲକ୍ଷ କଅଣ ? ତାହା ବିଚାର କରି ନିର୍ଦ୍ଦିଷ୍ଟ ପଥରେ ଚାଲିଲେ ଜୀବନର ସମସ୍ତ ଦ୍ୱନ୍ଦ ଓ ବ୍ୟର୍ଥତା ଲୋପ ପାଇ ପରମ ପରିତୃପ୍ତି ଆନନ୍ଦ ମିଳି ପାରିବ । ଜୀବନର ଉଦ୍ଦେଶ୍ୟ ଯଦି ସତ୍କର୍ମ ଏବଂ ଲକ୍ଷ ଯଦି ଭଗବତ ପ୍ରାପ୍ତି ହୁଏ । ତାହାହେଲେ ସଂସାର ଆନନ୍ଦମୟ ଓ ସମସ୍ତେ ସୁଖୀ ହେବେ ।

ସତ୍ୟ ତ୍ରେତୟା, ଦ୍ୱାପର, କଳି ଚାରିଯୁଗ । କଳି ଯେବେ ଶେଷ ହେଲେ ମଧ୍ୟ ଏହାପରେ ନିଶ୍ଚୟ ସତ୍ୟ ଆସିବେ । ସତ୍ୟ ଆସିଲେ ବର୍ତ୍ତମାନର ଅନ୍ଧକାର ଘୁଞ୍ଚିଯାଇ ଆଲୋକ ଆସିବ । ଆମ୍ଭେମାନେ ଆମର ଲକ୍ଷସ୍ଥଳ ସ୍ଥିର ରଖି କଳିର କବଳରୁ ସତ୍ୟକୁ ଉଦ୍ଧାର କରିବାପାଇଁ ସମସ୍ତେ ଏକ ମୁଖରେ ପ୍ରଭୁଙ୍କୁ ସ୍ମରଣ କରି ସତ୍ୟର ବଳ ସଂଗ୍ରହ କଲେ ବଳେ ବଳେ ସମାଜରୁ ସବୁ ପ୍ରକାର ଅବନତି ଦୂରହୋଇ ଯିବ । ଏଥିପାଇଁ ସାଧୁ ସନ୍ଥମାନେ କଳିର ପ୍ରଭାବରୁ ସତ୍ୟକୁ ଟାଣି ଆଣିବା ପାଇଁ, ନାନା ଦୁଃଖସହି ବଣ ଜଙ୍ଗଲରେ କଷ୍ଟ ସ୍ୱୀକାରପୂର୍ବକ ଯୋଗ ସାଧନାରେ ଲିପ୍ତ ଅଛନ୍ତି । ଆମ୍ଭେମାନେ ସତ୍ୟ ଧର୍ମର ଆଶ୍ରୟ ନେଇ କଳି କବଳରୁ ସତ୍ୟକୁ ଉଦ୍ଧାର କରିବା ସଙ୍ଗେ ସଙ୍ଗେ କିପରି

ଲକ୍ଷ ସ୍ଥଳରେ ପହଞ୍ଚି ପାରିବା ଏଥିପାଇଁ ଉତ୍କଳ-ସତ୍ୟ-ସମାଜର ଜନ୍ମ ଏବଂ ଉତ୍କଳ ସତ୍ୟସମାଜ ଆଜି ସବିନୟେ ଆପଣମାନଙ୍କୁ ଆହ୍ୱାନ କରୁଛି । ସତ୍ୟ ପ୍ରେମୀ ଭାଇମାନେ ବର୍ତ୍ତମାନର କାଳ ବେଳକୁ ଲକ୍ଷ କରନ୍ତୁ ଏବଂ ବିଚାର କରନ୍ତୁ ।

---

## ସପ୍ତଶଯ୍ୟା

ସପ୍ତସଯ୍ୟା ଢେଙ୍କାନାଳ ସହରର ୭ମାଇଲ ଦୂର ଦକ୍ଷିଣ ପଶ୍ଚିମ ଦିଗରେ ଅବସ୍ଥିତ । ଏହା ଅରଣ୍ୟପୂର୍ଣ୍ଣ ଫଳ ଫୁଲ ଭରା ଏକ ରମଣୀୟ ସ୍ଥାନ । ଝରଣାଟି କୁଳୁକୁଳୁ ନାଦ କରି ପାହାଡ଼ର ମଧ୍ୟ ଦେଶରୁ ବୋହି ଆସିଅଛି । ଏହି ସ୍ଥାନଟି ଅତି ପବିତ୍ର । ସପ୍ତଶଯ୍ୟାର ପୁରୁଣା ଇତିହାସ କିଛି ମିଳୁ ନାହିଁ । କେବଳ ଡ଼କ୍ଟର ଜୟକୃଷ୍ଣ ମିଶ୍ର ଉଲ୍ଲେଖ କରନ୍ତି ଯେ ପାଣ୍ଡବମାନେ ଏଠାରେ ସପ୍ତରାତ୍ର ଶଯ୍ୟା କରି ରହିଥିବାରୁ କାଳକ୍ରମେ ଏହା ସପ୍ତଶଯ୍ୟା ନାମ ପ୍ରବତ୍ତ ହୋଇଅଛି । କିମ୍ବଦନ୍ତୀରୁ ଜଣାଯାଏ ଯେ, ଅଙ୍ଗିରା, ବଶିଷ୍ଠ, ଅତ୍ରି, ମାରିଚ, ପୁଲହ, ପୁଲସ୍ତ, ଆଦି ଏହି ସପ୍ତର୍ଷି ମଣ୍ଡଳ ଏଠାରେ ବାସ କରୁଥିବାରୁ ଏହା କ୍ରମେ ସପ୍ତଶଯ୍ୟା ନାମ ପ୍ରବତ୍ତ ହୋଇଅଛି । ସ୍ଥାନୀୟ ବୃଦ୍ଧ ଲୋକମାନଙ୍କ କଥାରୁ ପ୍ରକାଶ ଯେ ୧୮୮୭ ମସିହାରେ ଜଗମୋହନ ଦାସ ନାମକ ଜଣେ ସାଧୁ ସପ୍ତଶଯ୍ୟାରେ ଥିଲେ । ସେ ସମୟରେ ଏହି ସ୍ଥାନଟି ଆହୁରି ଅରଣ୍ୟପୂର୍ଣ୍ଣ ଥିଲା । ପ୍ରତିଦିନ ସନ୍ଧ୍ୟାରେ ଗୋଟିଏ ବ୍ୟାଘ୍ର ସେ ସ୍ଥାନକୁ ଆସେ ବାବାଜି ଯାହା

ଦେଖାଇ କରିଥାନ୍ତି, ଗୋଟିଏ ଖଳରେ ସେଥିରୁ ବାଛି ଦେଇ; ଆସ
ନୃସିଂହ ଖାଅ ବୋଲି କହନ୍ତି । ବ୍ୟାଘ୍ର ଆସି ଖାଇ ଚାଲିଯାଏ । ଏହା
ଅନେକ ଲୋକ ଦେଖିଛନ୍ତି । ରାତ୍ର ଅର୍ଦ୍ଧରେ କୀର୍ତ୍ତନ, ଗାଉଣା ବାଜଣା
ଇତ୍ୟାଦି ହେଉଥିବାର ଅନେକ କହନ୍ତି । ତହିଁ ପରେ ଜଗମୋହନ
ଦାସଙ୍କ ଚେଲା ଶ୍ରୀ ନାରାୟଣ ଦାସ, ତାଙ୍କପରେ ଶ୍ରୀ ହରିଦାସ,
ବାଛିଧର ପାହାଡ଼ା ସିଂହ, ତହିଁ ପରେ ୧୯୨୮ ମସୀହାରେ ବାବାଜି
ସୁନାଦାସ, ତାଙ୍କପରେ ସୋମନାଥ ଦାସ ମୁନିଦାସ ଓ ତହିଁ ପରେ
ମଉନି ବାବା ୧୯୫୭ ମସୀହା ପର୍ଯ୍ୟନ୍ତ ରହିଥିଲେ । ୧୯୫୭ ମସିହା
ଅପ୍ରେଲ ୧୮ ତାରିଖ ଦିନ ଢେଙ୍କାନାଳର ତତ୍‌କାଳୀନ ରାଣୀ ସାହେବା
ଶ୍ରୀମତୀ ରତ୍ନପ୍ରଭା ଦେବୀ ସପ୍ତଶଯ୍ୟାରେ ରାମ ଲକ୍ଷ୍ମଣ ସୀତାଙ୍କ
ପ୍ରତିମୂର୍ତ୍ତି ସ୍ଥାପନ ଓ ପ୍ରତିଷ୍ଠା କରାଇଥିଲେ ଏବଂ ଠାକୁରଙ୍କ ମାର୍କଣ୍ଡ
ପାଇଁ ତାଙ୍କ ଦଳଖରେ ଥିବା ଅଂଟଦ ମୌଜାରେ ୧୦୭ ଏକର ଜମି ଠାକୁ-
ରଙ୍କୁ ଦାନ କରିଦେଇଥିଲେ । ଠାକୁର ସପ୍ତଶଯ୍ୟାରେ ପ୍ରତିଷ୍ଠା ହେବାପରେ
ଅଧିକାଂଶ ଦିନ କ୍ରମେ ଦର୍ଶନାର୍ଥୀମାନଙ୍କର ସମାଗମ ହେଲା । ଏବଂ
ବର୍ତ୍ତମାନ ପର୍ଯ୍ୟନ୍ତ ୪୨ ଜଣ ରୋଗଗ୍ରସ୍ତ ବ୍ୟକ୍ତି ସେଠାରେ ରହି
ନେଇ ଆଶ୍ଚର୍ଯ୍ୟ ଭାବରେ ଭଲ ହୋଇଥିବାର ଦେଖାଗଲା । ଇତିମଧ୍ୟରେ
ସପ୍ତଶଯ୍ୟାର କୌଣସି ଉଲ୍ଲେଖ ଯୋଗ୍ୟ ଖବର ନ ଥିଲେ ମଧ୍ୟ ପ୍ରତି
ସଂକ୍ରାନ୍ତି ଦିନ ରାତ୍ର ଅର୍ଦ୍ଧ ସମୟରେ ନାମ ସଂକୀର୍ତ୍ତନ ପାହାଡ଼
ମଧ୍ୟରେ ହେଉଥିବାର ଶୁଣାଯାଏ ବୁଢା ବୁଢ଼ୀମାନେ କହନ୍ତି ପୂର୍ବରୁ
ପୂର୍ଣ୍ଣମୀ ଅମାବାସ୍ୟାମାନଙ୍କରେ କଳଶ ଗାଉଣା ଅପେକ୍ଷା ଅଧିକରେ ନାମ
କୀର୍ତ୍ତନ ଶୁଣାଯାଉଥିଲା ଏବଂ ମୁନିଋଷିମାନେ ଜଙ୍ଗଲ ଭିତରେ ଯିବା
ଆସିବା କରୁଥିବାର ଦେଖାଯାଉଥିଲା । ବର୍ତ୍ତମାନ ପୁରୁଣା ମଠ
ଗୁମ୍ଫା ଆଦି ଦେଖିବାକୁ ମିଳୁଅଛି । ରାମ, ଲକ୍ଷ୍ମଣ ସୀତାଙ୍କ ପ୍ରତିଷ୍ଠା ପରେ
ସପ୍ତଶଯ୍ୟା ଉନ୍ନୟନ କମିଟୀ ଦ୍ୱାରା ରାମେଶ୍ୱର ମହାଦେବ ସେଠାରେ

ପ୍ରତିଷ୍ଠା ହେଲେ । ଆଠଗଡ଼ ବେଣ୍ଟପଦା ନିବାସୀ ଶ୍ରୀ ରୁଦ୍ରପ୍ରସାଦ ମହାନ୍ତି ମହାବୀର ହନୁମାନଙ୍କର ନୂତନ ପ୍ରସ୍ତର ମୂର୍ତ୍ତୀ ନିର୍ମାଣ କରାଇ ପ୍ରତିଷ୍ଠା କରାଇଲେ । ବର୍ତ୍ତମାନ ଢେଙ୍କାନାଳର ରାଜମାତା ମହୋଦୟା ସପ୍ତଶଯ୍ୟାରେ ରାମଲକ୍ଷ୍ମଣ ସୀତାଙ୍କର ଝଣ୍ଡିଏ ମନ୍ଦିର ତିଆରି କରିବା ପାଇଁ ଶୁଭ ଦେଇଛନ୍ତି ଏବଂ ରାମେଶ୍ୱର ମହାଦେବଙ୍କ ପାଇଁ ଗୋବିନ୍ଦପୁର ଓ ମାଟିଆ ଗ୍ରାମ ନିବାସୀ ଶ୍ରୀ ସନାତନ ମହାନ୍ତି ଓ ଶ୍ରୀ ଅଲେଖ ବିହାରୀ ମହାନ୍ତି ମନ୍ଦିରର ପ୍ରାରମ୍ଭିକ କାର୍ଯ୍ୟ ଆରମ୍ଭ କରି ଦେଲେଣି । ଏହି ମହତ ଅନୁଷ୍ଠାନର ଉନ୍ନତି କଲ୍ପେ ଓ ଠାକୁରଙ୍କର ମାତିକାନ୍ତି ପାଇଁ ନିମ୍ନଲିଖିତ ଗ୍ରାମବାସୀ ଭାଇମାନେ ଜମିଦାନ କରିଛନ୍ତି ।

୧ । ଶ୍ରୀ ଶ୍ରୀଧର ମଙ୍ଗରାଜ, ମାଣିପୁର
୨ । ଶ୍ରୀ ହରିହର ପଟ୍ଟନାୟକ, ଦେଓପଡ଼ା
୩ । ଶ୍ରୀ ଆନନ୍ଦ ଚନ୍ଦ୍ର ସ୍ୱାଇଁ, ସଦେଇ ବେହେରଣୀ
୪ । ଶ୍ରୀ ନିଧି ସ୍ୱାଇଁ, ,,
୫ । ଶ୍ରୀ ଅନନ୍ତ ଚରଣ ସାହୁ, ବଡ଼ଗିଲା
୬ । ଶ୍ରୀ ନନ୍ଦାଦ୍ରି ସାନ୍ତରା, ପଦ୍ମନାଭପୁର
୭ । ଶ୍ରୀ ହରେକୃଷ୍ଣ କାଞ୍ଜିଆ, କମନଙ୍ଗ

ଏତଦ୍‌ବ୍ୟତିତ ଠାକୁରଙ୍କ ଖଞ୍ଜା ମୌଜା ବୋଲି ପରିଚିତ ଥିବା ଟେନ୍ତୁଳି ପାଟଣା ଗ୍ରାମ ନିବାସୀ ତାଙ୍କ ଗ୍ରାମ ରକବା ଭୁକ୍ତ ଖଣ୍ଡିଏ ଜମି ଠାକୁରଙ୍କୁ ଦାନ କରିଦେଇ ଭାଗଚାଷ କରି ଫସଲର ଅର୍ଦ୍ଧେକ ଭାଗ ଠାକୁରଙ୍କୁ ଦେବାର ସ୍ଥିର କଲେ । ଏହାବାଦ୍ ୪ଗୋଟି ଗାଈ ସପ୍ତଶଯ୍ୟା ଠାକୁରଙ୍କୁ ଗୃହଜାତ ଦାନ କରିଛନ୍ତି ।

ଶ୍ରୀ କାହ୍ନୁ ଚରଣ ମିଶ୍ର

# ଉତ୍କଳ ସତ୍ୟ ସମାଜ

୧୯୫୭ ମସିହା ଗତ ହେଲା । ୧୯୬୦ ମସିହାରେ ଉତ୍କଳର ସାଧୁ ସନ୍ଥମାନଙ୍କୁ ସତ୍ସଙ୍ଗସଭା ଡାକିବା ପାଇଁ ଆୟୋଜନ କରାଯାଇଥିଲା । କେତେକ ଅସୁବିଧା କାରଣବଶତଃ ତାହା ମଧ୍ୟ ହୋଇ ପାରିଲା ନାହିଁ । ୧୯୬୪ ମସିହା ଅପ୍ରେଲ ୯ ତାରିଖ ଦିନ ଢେଙ୍କାନାଳ ସହରର ବିଶିଷ୍ଟ ଜନନେତା ଆଡ଼ଭୋକେଟ୍ ଶ୍ରୀଯୁକ୍ତ ଅଦ୍ୱୈତ ଚରଣ ଦାସ, ଶ୍ରୀ ହରି ମୋହନ ପଟ୍ଟନାୟକ, ସୁରେନ୍ଦ୍ର ମୋହନ-ପଟ୍ଟନାୟକ, ଶ୍ରୀ ବ୍ରଜ କିଶୋର ଧଳ, ଶ୍ରୀ ଶ୍ରୀଧର ମଙ୍ଗରାଜ, ଶ୍ରୀ ସୂର୍ଯ୍ୟନାରାୟଣ ପଟ୍ଟନାୟକ, ଶ୍ରୀ ଗୋପିନାଥ ଜେନା ପ୍ରଭୃତି ଅନ୍ୟାନ୍ୟ ୩୦ ଜଣଙ୍କ ସମେତ ଢେଙ୍କାନାଳ ସହର ବଳଦେବଜିଉଙ୍କ ମନ୍ଦିରରେ ଗୋଟିଏ ସଭା ହେଲା । ଉକ୍ତ ସଭାର ଆଲୋଚନା ବିଷୟ ଏହିକି — ଭାରତର ଚାରିଧାମ ମଧ୍ୟରୁ ଉତ୍କଳସ୍ଥ ପୁରୀଧାମ ଅନ୍ୟତମ । ଏହି ଉତ୍କଳରେ ଜଗନ୍ନାଥ ମହାପ୍ରଭୁ ବିରାଜମାନ କରିଥିବାରୁ ଭାରତ ତଥା ଭାରତ ବାହାରୁ ଏପରିକି ପୃଥିବୀର ଅନ୍ୟଦେଶମାନଙ୍କରୁ ମଧ୍ୟ ଲୋକ ଏଠାକୁ ଆସିଥାଆନ୍ତି । ଆମ ଦେଶର ଲୋକମାନେ ଓଡ଼ିଶା ବାହାରକୁ ଗଲେ ଜଗନ୍ନାଥ ଦେଶର ଲୋକ ହିସାବରେ ସ୍ନେହ ଆଦର ଶ୍ରଦ୍ଧା ଓ ଭକ୍ତି ପାଇଥାଆନ୍ତି । ଏହି ଉତ୍କଳରେ ଦଶ ପନ୍ଦର ବର୍ଷ ପୂର୍ବରୁ ଆମ ସମାଜରେ ଯେପରି ଆଧ୍ୟାତ୍ମିକ ଭାବଧାରା ଖେଳୁଥିଲା ଓ ଲୋକମାନେ ଆଧ୍ୟାତ୍ମିକ ମାର୍ଗରେ ଗତିକରି ସୁଖ-ଶାନ୍ତିରେ କାଳାତିପାତ କରୁଥିଲେ ତାହା କ୍ରମେ କ୍ରମେ ହ୍ରାସ ହୋଇ ଯାଉଅଛି । ଏହା ଫଳରେ ବର୍ତ୍ତମାନ ସମାଜରେ ବ୍ୟକ୍ତିଗତ ଓ ସାମାଜିକ କ୍ଷେତ୍ରରେ ନ୍ୟାୟ, ଅନ୍ୟାୟ, ସତ୍ୟ, ମିଥ୍ୟା ବିଚାର

ଅବଗୁର, ନିନ୍ଦା, ପ୍ରଶଂସା, ଭଲ, ମନ୍ଦ ପ୍ରତି କାହାର ଭ୍ରୂକ୍ଷେପ ନାହିଁ । ବରଂ ଗାଁ ଗହଳ ପ୍ରଗଙ୍ଗୀ ମାନଙ୍କରେ ଅଗାବ ଅଶାନ୍ତି, ଅନ୍ୟାୟ, ଅନୀତି, ମିଥ୍ୟା, କଦାଗ୍ରହ ସଂଵତ ଅନର୍ଥ ଲଗି ରହିଛି । ଶଠତା ସ୍ୱାର୍ଥପରତା, କପଟତା, ଅବିଶ୍ୱାସ ଭାବ ସବୁର ଅନ୍ତରରେ ରହିବା ହାଗ୍ର ଲୋକମାନେ ସ୍ୱାର୍ଥ ସାଧନ ପାଇଁ ଭାଇ ବନ୍ଧୁ କୁଟୁମ୍ବଙ୍କୁ ମଧ୍ୟ ଅନ୍ତର କରି ଦେଉଛନ୍ତି । ଧର୍ମ, କର୍ମ, ନ୍ୟାୟ, ନିଷ୍ଠା ଓ ଈଶ୍ୱର ବିଶ୍ୱାସ ହଦରୁ ସମସ୍ତେ ଦୂରେଇ ଯାଉଛନ୍ତି । ଭଗବତ ପ୍ରେମ, ଆସ୍ୱାଦନ କରି ସମସ୍ତେ ଯେପରି ସୁଖ ଶାନ୍ତିରେ ଥିଲେ ତାହା ବର୍ତ୍ତମାନ ସମାଜରେ ଦେଖାଯାଉନାହିଁ । ଏହିସବୁ ବିଷୟ ଆଲୋଚନା ହେବାପରେ ସର୍ବ ସମ୍ମତି କ୍ରମେ ପ୍ରକାଶ ପାଇଲା ଯେ ପ୍ରତ୍ୟେକ ବ୍ୟକ୍ତି ନିଜର ଦୈନନ୍ଦିନ ଜୀବନରେ ଯଦି ନିଜର ନୈତିକମାନ ନ ବଢ଼ାଇବା, ସତ୍ୟନିଷ୍ଠ, ନ୍ୟାୟନିଷ୍ଠ, ଧର୍ମନିଷ୍ଠ ଓ କର୍ମନିଷ୍ଠ ନ ହେବା, ସ୍ୱାର୍ଥତ୍ୟାଗ ନ କରିବା ନୀତି ନିଷ୍ଠା ନିୟମକୁ ନ ମାନିବା, ମିଥ୍ୟା ପ୍ରବଞ୍ଚନାଠାରୁ ଦୂରେଇ ନ ରହିବା, ସମାଜର ସମୂହ କଲ୍ୟାଣ ଦୃଷ୍ଟିରୁ ସେବା ମନୋବୃତ୍ତି ନେଇ କର୍ମ ନ କରିବା ତାହାହେଲେ ଆମସମାଜର ଉନ୍ନତି ହୋଇ ପାରିବ ନାହିଁ । ଆମ୍ଭେମାନେ ସମାଜର ସମୂହ କଲ୍ୟାଣ ପାଇଁ ସତ୍ୟ, ନ୍ୟାୟ, ଧର୍ମର ଆଶ୍ରୟ ନେଇ ହୃଦୟରେ ଆଧ୍ୟାତ୍ମିକ ଚିନ୍ତାଧାରା ରଖି ସମାଜ ପାଇଁ କର୍ମ କରିଗଲେ ଆମ ସମାଜର ସାଧାରଣ କ୍ଷେତ୍ରରେ ଉନ୍ନତି ବଳେ ବଳେ ଆଗେଇ ଆସିବ । ପୂର୍ବର ନୀତି ନିଷ୍ଠାକୁ କାର୍ଯ୍ୟକାରୀ କରାଯିବା ପାଇଁ ଗୋଟିଏ ବଧିବଦ୍ଧ ଅନୁଷ୍ଠାନ ରହିବା ଦରକାର । ଆଲୋଚନା ଶେଷରେ ସିଦ୍ଧାନ୍ତ ହେଲକି ଆଗାମୀ ତା ୨୦ । ୪ । ୭୪ରିଖ ରାମ ନବମୀ ଦିବସରେ ଉତ୍କଳର ବିଭିନ୍ନ ପ୍ରାନ୍ତରୁ ସାଧୁ ସନ୍ଥମାନଙ୍କୁ ସପ୍ତଶଯ୍ୟା ଡକାଯାଉ ଏବଂ ସ୍ଥାନୀୟ ଲୋକମାନେ ଉକ୍ତ ଦିବସରେ ସପ୍ତଶଯ୍ୟା ସଭାରେ

ଯୋଗଦାନ କରିବା ପାଇଁ ଆହ୍ୱାନ କରାଯାଉ । ଏହାପରେ ସାଧୁସନ୍ଥ ତଥା ସ୍ଥାନୀୟ ଗ୍ରାମବାସୀ ଭାଇମାନେ ରାମ ନବମୀ ଦିବସରେ ସପ୍ତଶଯ୍ୟାରେ ପହଞ୍ଚିବା ନିମିତ୍ତ ବ୍ୟବସ୍ଥା ଗ୍ରହଣ କରାଗଲା ।

ତା ୨୦ । ୪ । ୭୪ରିଖ ଦିବା ୩ ଘଟିକା ସମୟରେ ଉତ୍କଳର ବିଭିନ୍ନ ପ୍ରାନ୍ତରୁ ୫୦ ଜଣ ସାଧୁ ସନ୍ଥଙ୍କ ସମେତ ୧୭୦୦ ସ୍ଥାନୀୟ ଲୋକ ସପ୍ତଶଯ୍ୟା ସଭାରେ ଯୋଗଦାନ କରିଥିଲେ । ଏହି ସଭାରେ ପୁରୀ ରାଧାକାନ୍ତ ମଠର ପଣ୍ଡିତ ଶ୍ରୀ ହେମାଙ୍ଗ ପ୍ରସାଦ ଦାଶ ଶାସ୍ତ୍ରୀ ସଭାପତିତ୍ୱ କରିଥିଲେ । ପୂର୍ବ ବିଷୟ ଉପରେ ଆଲୋଚନା ହେବାପରେ ସାଧୁ ସନ୍ଥ ତଥା ବିଶିଷ୍ଟ ଭଦ୍ରବ୍ୟକ୍ତିମାନେ ମତାମତ ଦେଲେ ଯେ ଉତ୍କଳକୁ କେନ୍ଦ୍ର କରି ଢେଙ୍କାନାଳ ସପ୍ତଶଯ୍ୟାରେ "ଉତ୍କଳ ସତ୍ୟ ସମାଜ" ନାମକ ଗୋଟିଏ ଅନୁଷ୍ଠାନ କରାଯିବ । ଏହି ଅନୁଷ୍ଠାନ ୨ଟି ଭାଗରେ ବିଭକ୍ତ ହେବ । ୧ମ ଅଙ୍ଗ ହେଲା-ସପ୍ତଶଯ୍ୟା-ଠାରେ ଗୋଟିଏ ଗୁରୁକୁଳ ଆଶ୍ରମ ଖୋଲାଯାଇ ପ୍ରତିଜିଲ୍ଲାରୁ ଛାତ୍ର ଗ୍ରହଣ କରାଯିବ ଏବଂ ସେମାନଙ୍କୁ ଆଧ୍ୟାତ୍ମିକ ପଦ୍ଧତିରେ ଶିକ୍ଷା ପ୍ରଦାନ କରାଯିବ ଏବଂ ଦ୍ୱିତୀୟ ଅଙ୍ଗ ହେଲା ଉତ୍କଳ ସତ୍ୟସମାଜ ଦ୍ୱାରା ୫ଗୋଟି ନିୟମ ପ୍ରଣୟନ କରାଯିବ । ଏହି ନିୟମକୁ ରାଜା ପ୍ରଜା, ଧନୀ ମାନୀ ମୂର୍ଖ ପଣ୍ଡିତ ଯେ କେହି ପାଳନ କରିବାକୁ ସମର୍ଥ ହେବେ ଏବଂ ଉତ୍କଳ ସତ୍ୟ ସମାଜରେ ସଭ୍ୟ ହେବାକୁ ଇଚ୍ଛାକରିବେ ସେମାନେ ସଭ୍ୟ ଭାବରେ ଯୋଗଦେଇ ପାରିବେ । ଶେଷରେ ଏହି ଉଭୟ ଦିଗରୁ ତାଲିମ ପ୍ରାପ୍ତ ବ୍ୟକ୍ତି ବିଶେଷଙ୍କ ଦ୍ୱାରା ୧୯୭୨ ମସିହା ମାଘ ପଞ୍ଚମୀ ଠାରୁ ଉତ୍କଳର ପୁରପଲ୍ଲୀରେ ସତ୍ୟ-ଧର୍ମ ସମ୍ବନ୍ଧରେ ପ୍ରଚାର କାର୍ଯ୍ୟ ଆରମ୍ଭ କରାଯିବ ।

ପୁନରାୟ ତା ୨୦ । ୫ । ୭୪ ରିଖରେ ଢେଙ୍କାନାଳ ଟାଉନ

-ହଲରେ କେତେକ ସଭ୍ୟଙ୍କ ସମାବେଶରେ ପୂର୍ବକଥା ଆଲୋଚନା କରାଯାଇ ଉତ୍କଳ ସତ୍ୟ ସମାଜ ତରଫରୁ "ଗୁରୁକୁଳ ଆଶ୍ରମ" ଖୋଲିଯିବାର ପ୍ରସ୍ତାବ ଦୃଢ଼ୀଭୂତ ହେଲା । ଢେଙ୍କାନାଳ କାମାକ୍ଷାନଗର ସବ୍ ଡ଼ିଭିଜନସ୍ଥ ଶ୍ରୀ ସଦାନନ୍ଦ ସାହୁଙ୍କ ପ୍ରମୁଖ ସାତଜଣ ବ୍ୟକ୍ତି ମୁକ୍ତ କଣ୍ଠରେ ସେମାନଙ୍କର ପିଲାମାନଙ୍କୁ ଉତ୍କଳ ସତ୍ୟସମାଜ ତରଫରୁ ସପ୍ତଶଯ୍ୟାରେ ଖୋଲାଯାଉଥିବା ଗୁରୁକୁଳ ଆଶ୍ରମକୁ ଦାନକରିବାକୁ ପ୍ରତିଶ୍ରୁତି ଦେଇଥିଲେ । ଏବଂ ତଦନୁସାରେ ତା ୧୧ । ୭ । ୬୪ ରିଖରେ ପୁଣି ମନ୍ଦିରଠାରେ ଉତ୍କଳ ସତ୍ୟସମାଜ ତରଫରୁ ଆୟୋଜନ କରାଯାଇଥିବା ସଭାରେ ଛାତ୍ରମାନଙ୍କର ଅଭିଭାବକମାନେ ଜଗନ୍ନାଥଙ୍କ ସମ୍ମୁଖ ନିର୍ମଳ ପ୍ରାଣରେ ତାଙ୍କର ପିଲାମାନଙ୍କୁ ଉତ୍କଳ ସତ୍ୟସମାଜ ପାଇଁ ଦାନ କରିଥିଲେ । ସେମାନଙ୍କ ମଧ୍ୟରେ ଢେଙ୍କାନାଳ ସଦର ସବ-ଡ଼ିଭିଜନସ୍ଥ ବଳଭଦ୍ରପୁର ଗ୍ରାମ ନିବାସୀ ବନୋଦିନୀ ମିଶ୍ର ନାମକ ଜଣେ ଶିକ୍ଷିତା ସ୍ତ୍ରୀ ତାଙ୍କର କୋଳରେ ଥିବା ଗୋଟିଏ ପୁତ୍ରକୁ ମଧ୍ୟ ଦାନ କରି ଦେଇଥିଲେ । ଏହି ବାବଦରେ ପୁଣି ଯିବା ଆସିବା ସମସ୍ତ ଖର୍ଚ୍ଚ କାମାକ୍ଷାନଗର ନିବାସୀ ଶ୍ରୀ ରମେଶଚନ୍ଦ୍ର ପଟ୍ଟନାୟକ ବହନ କରିଥିଲେ ।

ତା ୧୨ । ୭ । ୬୪ ରିଖରେ ଢେଙ୍କାନାଳ ସପ୍ତଶଯ୍ୟାରେ ଗୁରୁକୁଳ ଆଶ୍ରମ ଖୋଲାଗଲା । ଉକ୍ତ ଅବସରରେ ଯାହାକିଛି ଖର୍ଚ୍ଚ ଢେଙ୍କାନାଳ ଟାଉନ ନିବାସୀ ଶ୍ରୀ ଗିରିବର ସାହୁ ବହନ କରିଥିଲେ । ଗୁରୁକୁଳ ଆଶ୍ରମ ଖୋଲିଯିବା ପରେ, ଶିକ୍ଷକ ଓ ବିଭିନ୍ନ ଜିଲ୍ଲାର ବିଭିନ୍ନ ସ୍ଥାନରୁ ଛାତ୍ରମାନେ ଆସି ଯୋଗଦେଲେ ଏବଂ ସତ୍ୟସମାଜର ସଭ୍ୟ ଗ୍ରହଣ କାର୍ଯ୍ୟ କ୍ରମରେ ସଂଖ୍ୟା ବଢ଼ି ଚାଲିଲା । ବିଧିବଦ୍ଧଭାବେ ଉକ୍ତ ଗୁରୁକୁଳ ଆଶ୍ରମ ତା ୧୯ । ୪ । ୬୭ରିଖରେ ଓଡ଼ିଶାର

କୃଷିମନ୍ତ୍ରୀ ଶ୍ରୀଯୁକ୍ତ ରାଜବଲ୍ଲଭ ମିଶ୍ରଙ୍କ ଦ୍ୱାରା ଆନୁଷ୍ଠାନିକ ଭାବେ ସମାରୋହରେ ଉଦ୍‌ଘାଟିତ ହୋଇଥିଲା। ସଭ୍ୟମାନେ-ଓଁ ସତ୍ୟମେବ ଜୟତେ ଉତ୍କଳ ସତ୍ୟସମାଜ ଉଲ୍ଲେଖଥିବା ପିତଳ ସନନ୍ଦ ପତ୍ର ପାଇଲେ। ଏମାନଙ୍କ ମଧ୍ୟରେ କଳଭ ଗ୍ରାମ ନିବାସୀ ଶ୍ରୀ ବୃନ୍ଦାବନ-ସାମଲ ସର୍ବ ପ୍ରଥମ।

'ଉତ୍କଳ ସତ୍ୟସମାଜ' ଉତ୍କଳର ସରକାରୀ ବେସରକାରୀ ତଥା ପୁରପଲ୍ଲୀ ମାନଙ୍କରେ କାର୍ଯ୍ୟ କରିବା ନିମିତ୍ତ କର୍ମୀମାନେ ରେଲ, ମଟର ଓ ସାଇକେଲ ଯୋଗେ ଅନ୍ୟ ଜିଲ୍ଲାମାନଙ୍କୁ ବାହାରିଲେ।

ବର୍ତ୍ତମାନ ଶ୍ରୀ ନରହରି ସାହୁ, ଶ୍ରୀ ଗଙ୍ଗେଶ୍ୱର ଭକତ ଶ୍ରୀ ଜଟାଧାରୀ ନାଥ ଏବଂ ଶ୍ରୀ ରବିବାବା ଓଡ଼ିଶାର ସବୁ ଅଞ୍ଚଳରେ ସତ୍ୟସମାଜ ତରଫରୁ ବୁଲୁଛନ୍ତି।

ଉତ୍କଳ ସତ୍ୟସମାଜକୁ ଦୃଢ଼ୀଭୂତ କରିବା ପାଇଁ ଓ ସୁପରି-ଚାଳନା ନିମିତ୍ତ ୧୦୧ ଜଣଙ୍କୁ ନେଇ ଗୋଟିଏ ପ୍ରତିନିଧି ସଭା ଏବଂ ଏମାନଙ୍କ ମଧ୍ୟରୁ ୧୧ ଜଣଙ୍କୁ ନେଇ ଗୋଟିଏ କାର୍ଯ୍ୟକାରୀ କମିଟୀ ଗଠନ କରାଗଲା। ଶେଷରେ ୧୯୭୨ ମସୀହା ମାଘ ୫ମୀଠାରୁ ୧୯୮୦ ମସୀହା ମଧ୍ୟରେ, ଏହି ଅନୁଷ୍ଠାନ ତରଫରୁ ଉତ୍କଳର ପ୍ରତି ଜିଲାରେ ସତ୍ୟଧର୍ମ ପ୍ରଚାର ନିମିତ୍ତ ଏବଂ ଲୋକମାନେ ଧର୍ମ କର୍ମ ଦିଗରେ କିପରି ଆଗଭର ହେବେ। ଏହି ଲକ୍ଷରେ ଯଥାବିଧି ଆଇନ ଗଢାଯାଇ ସରକାରଙ୍କ ନିକଟରେ ଏହି ଅନୁଷ୍ଠାନ ରେଜେଷ୍ଟ୍ରି କରାଗଲା। ରେ: ନ: ୪୫୨୧/୨୮

ଉକ୍ତ ଅନୁଷ୍ଠାନର ଲାଇବ୍ରେରୀ ଓ ଗୃହାବାସ ତଥା ଅନ୍ୟାନ୍ୟ ଅସୁବିଧା ଦୂରୀକରଣାର୍ଥେ ସଂପୃକ୍ତ ମନ୍ତ୍ରୀ ମହୋଦୟଙ୍କୁ ଅନୁରୋଧ କରାଯାଇଅଛି । ସପ୍ତଶଯ୍ୟାରେ ବାଗ ବଗିଚା ଉନ୍ନତି କଲ୍ପେ ଓଡ଼ିଶାର କୃଷି ଡିରେକ୍ଟର ମହୋଦୟ ଜଣେ କୃଷି କର୍ମଚାରୀ ନିଯୁକ୍ତ କରିଛନ୍ତି ।

ବର୍ତ୍ତମାନ ସପ୍ତଶଯ୍ୟାରେ ଇଂରେଜି ଭାବରେ ମାଟ୍ରିକୁଲେଶନ ପର୍ଯ୍ୟନ୍ତ ସାଧାରଣ ଶିକ୍ଷା ସହିତ, ଆଧ୍ୟାତ୍ମିକ ମାର୍ଗ ତଥା ଓଡ଼ିଆ ଇଂରାଜୀ, ହିନ୍ଦି, ସଂସ୍କୃତ ପଢ଼ାଇବା ନିମିତ୍ତ ଶିକ୍ଷକ ନିଯୁକ୍ତ ହୋଇଛନ୍ତି । ସପ୍ତଶଯ୍ୟା ନିକଟସ୍ଥ ବଡ଼ଗିଲା ଓ ସହେଇ ବେଡରେଣୀ ଗ୍ରାମବାସୀଙ୍କ ସହଯୋଗରେ ସପ୍ତଶଯ୍ୟା ତଳେ ଗୋଟିଏ ଆଶ୍ରମ ତିଆରି ହୋଇଅଛି ।

ଏହି ଆଶ୍ରମଠାରେ ପ୍ରତି ପୂର୍ଣ୍ଣିମୀ ଦିନ ସବାରେ ଗୋଟିଏ ବୈଠକ ହୁଏ । ଗୀତା, ଭାଗବତ ଅଧ୍ୟୟନ ଓ ନାମ ସଂକୀର୍ତ୍ତନ ହୁଏ ଓ ନୂତନ ସଭ୍ୟ ଗ୍ରହଣ କରାଯାଆନ୍ତି । ବର୍ତ୍ତମାନ ଏହାକୁ କେନ୍ଦ୍ର କରି ନିକଟସ୍ଥ ତିନକୋଶ ମଧ୍ୟରୁ ଧର୍ମ ପ୍ରେମୀମାନେ ଏହି ଧର୍ମସଙ୍ଘରେ ଯୋଗଦେଲେଣି । ଏହା ବ୍ୟତୀତ ଉତ୍କଳର ବିଭିନ୍ନ ଜିଲ୍ଲାରୁ ଏହି ସଙ୍ଘରେ ସଭ୍ୟ ରୂପେ ଯୋଗଦେବାକୁ ସ୍ୱତନ୍ତ୍ର ରୂପେ ଆହ୍ୱାନ କରାଯାଉଅଛି ।

ଆଗାମୀ ମାଘ ପଞ୍ଚମୀ ଠାରୁ ସପ୍ତଶଯ୍ୟା ବାଣୀ ନାମକ ଖଣ୍ଡିଏ ଆଧ୍ୟାତ୍ମିକ ମୂଳକ ପତ୍ରିକା ଦେଶ ମଧ୍ୟରେ ପ୍ରଚଳିତ କରାଯିବାର ପ୍ରସ୍ତାବ ହେଉଅଛି । ୧୯୬୭ ଠାରୁ ୧୯୭୦ ଶେଷ ସୁଦ୍ଧା ସଭ୍ୟ ଗ୍ରହଣ କରାଯିବେ । ଶାସ୍ତ୍ରମାନଙ୍କରେ ଅଛି—

"ସତ୍ୟ ସ୍ୱରୂପ ଭଗବାନ, ସଂସାର ତାଙ୍କର ଉଆସ,
ମାୟାରେ ଖେଳୁଛି ଜଗତ, ମାୟାରେ ହୁଏ ଆତଯାତ ।
ସର୍ବ ଶରୀର ମଧ୍ୟେ ସାର, ଦୁର୍ଲ୍ଲଭ ନର କଳେବର,
ଏଜୀବ ଜ୍ଞାନ ବଳେ ଜାଣି, ମୁକତି ପଥ ପରମାଣି ।
ମୋହେ ହରାଇ ବୁଦ୍ଧି ଜ୍ଞାନ, ଭୋଗୁଛି ସଂସାର କଷଣ ।
ନ ବୁଝି ହୋଇ ପଥହରା, ସୁଖକୁ କରିଣ ପସରା,
ଶେଷେ ନରକେ ହୁଏ ଗାମୀ, ହରାଇ ବସେ ସବୁଜାଣି ।

ପ୍ରଭୁ ଦୟା ହେଲେ କିଞ୍ଚିତ ମାତ୍ର,
ଅନ୍ଧାରେ ଦିଶିବ ମୁକତି ପଥ ।
ଧନରତ୍ନ କିଛି ଲୋଡ଼ା ନୁହଇ,
ମନ ଦୃଢ଼ଥିଲେ ସବୁ ମିଳଇ ।
ପ୍ରାଣର ଈଶ୍ୱର ହୃଦୟ ଧନ,
ତାଙ୍କ ପାଶେ ସଦା ଯିବାକୁ ମନ ।
ଆଶକ୍ତି ତେଜି ତୁ ଦୃଢ଼ ମନରେ
ମଜ୍ଜିରହ ସଦା ପ୍ରଭୁ ନାମରେ ।
ବ୍ୟାକୁଳତା ଯେବେ ନାହିଁ ପ୍ରାଣରେ,
ଅସମ୍ଭବ ହୁଏ ଯାହା ଚାହିଁଲେ ।
ଭୋଗରେ ଲାଳସା ଥିବା ପର୍ଯ୍ୟନ୍ତ,
ଭଗବତ୍ କୃପା ନୁହେଁ ପ୍ରାପତଃ ।
ଅତୀବ ଭୀଷଣ ସଂସାର ସିନ୍ଧୁ,
ନାଉରୀ ଅଟନ୍ତି ଶ୍ରୀ ଦୀନବନ୍ଧୁ ।
ତାଙ୍କ ଅନୁଗ୍ରହ ହୋଇଲେ ତୋରେ,
ଏଭବୁ ତରିବୁ ଅନାୟୁଶରେ ।

ପ୍ରଭୁ ନାମ ଏକା ଅଟଇ ତତ୍ତ୍ୱ,
ଯାହା ଦୟାହେଲେ ଭବରୁ ପାର ।
ଅଧର୍ମ ଅଟଇ ନରକ ମୂଳ,
ସତ୍ୟ ଧର୍ମ ଏକା ସଂସାରେ ସାର ।
ହୃଦେ ମହାମନ୍ତ୍ର କର ଭଜନ,
ତୁଟି ଯିବ ନଷ୍ଟେ ଭବ ବନ୍ଧନ ।
ସତ୍ୟରେ ଚଳୁଛି ସଂସାର ସାରା,
ସୂର୍ଯ୍ୟ ଆତଯାତ ବରଷାଧାରା ।
କଳିଯୁଗ ଆସି ହେଲା ବଇରୀ,
ସତ୍ୟ ଆଡୁରେ କରନ୍ତି ଗୁହାରୀ ।
କଳି ବରଗିଛି ସତ୍ୟକୁ ନେଇ,
କାତର ପ୍ରାଣରେ ସତ୍ୟ ଡାକଇ ।
ବିବେକୀ କର୍ଣ୍ଣରେ କର ଶ୍ରବଣ,
କଳିହାତୁ ବେଗେ ସତ୍ୟକୁ ଟାଣ ।
ଏ ଭବ ସଂସାରୁ ହେବାକୁ ପାର,
ସତ୍ୟଧର୍ମ ଏକା ଅଟନ୍ତି ତାର ।"

ଆହୁରି ଶାସ୍ତ୍ର ମାନଙ୍କରେ ଅଛି— ୧୯୬୭ ମସୀହାଠାରୁ ୧୯୮୦ ମସୀହା ପର୍ଯ୍ୟନ୍ତ ଦେଶ ଭିତରେ ନାନା ପ୍ରକାର ଦୁଃଖଯନ୍ତ୍ରଣା, ଅଭାବ ଅନାଟନ, ରୋଗ ଶୋକ, ବିପ୍ଲବ, ଯୁଦ୍ଧ, ପଶୁନିଧନ ନାନା ପ୍ରକାର ଅଶାନ୍ତି, ଜଳାର୍ଣ୍ଣବ, ଅତିବୃଷ୍ଟି ବାତ୍ୟା ମରୁଡ଼ି ଆଦି ଦେଖାଯିବ । ଲୋକମାନେ ଅଶାନ୍ତିରେ କାଳ କାଟିବେ । କେହି କାହାକଥା ମାନିବେ ନାହିଁ । ଉଚ୍ଚ ନୀଚ ଭେଦା ଭେଦ ଭାବ ରହିବ ନାହିଁ । ନୀଚ ପ୍ରକୃତିର ଲୋକ ଅଧିକ ହେବେ । ଖାଦ୍ୟ ଅନାଟନ ହେବ ।

ବାପ-ପୁଅ ଭାଇ-ବନ୍ଧୁ ମଧ୍ୟରେ ଅଯଥା କଳହ ବୃଦ୍ଧି ହେବ । ମାଣ ଗଉଣୀ ଚୁରାଇ ଧାନ ଚାଉଳ ଦେବେ ନାହିଁ । ପର ଦ୍ରବ୍ୟ ଲୁଣ୍ଠନ କରିବେ । ଅବାଟେ ଯିବେ । ଅମାନ୍ତ-ଅକଥା କରିବେ । ମିଥ୍ୟାରେ ପରକୁ ବୁଡ଼ାଇବେ । କୁକର୍ମୀ ହେବେ । ଧନବଳ ହେବ । ମନବଳ କମିଯିବ । ନ ଦେଖିଲା କଥା ଦେଖିବେ । ନ ଶୁଣିଲା କଥା ଶୁଣି ଆଶ୍ଚର୍ଯ୍ୟ ହେବେ । ଲୋକମାନେ ପାଠଶାସ୍ତ୍ର ଶାଠ ପଢ଼ିବେ । ଧର୍ମ ବଳ କମିଯିବ । ପାପବଳ ବଢ଼ିବ । ଭାଇ-ଭଉଣୀ ହରଣ ହେବ । ଗୋ ହରଣ ହେବ । ପଶୁହାନି ହେବ । ମରୁଡ଼ି ହେବ । ଧ୍ୱଂସାତ୍ମକ କାଣ୍ଡହେବ । ଅଗ୍ନିକାଣ୍ଡ ହେବ, ଜଳଭୟ, ପବନଭୟ, ଦୁର୍ଭିକ୍ଷ, ରୌଦ୍ରତାପ ହେବ । ଜଳାଶୟ ଶୁଷ୍କହେବ, ଗୃହୀମାନେ ବାଟ, ଦାଣ୍ଡ ଗୋଡଣ୍ଡା, ଶ୍ମଶାନ, ଗୃହ କରିବେ । ସ୍ଥାନେ ସ୍ଥାନେ ଦେବଦେବୀ ପୂଜା ଚାଲିବେ ନାହିଁ । ଗୀତା ଭାଗବତ ଓ ଶାସ୍ତ୍ରବାଣୀ କେହି ମାନିବେ ନାହିଁ । ସହରେ ବଜାର ହୋଇ ପାରିବ ନାହିଁ ଲୋକେ ଅତି ମନ୍ଦକୁ ଖୁବ୍ ଭଲ ପାଇବେ । ଦରଦାମ ଦିନକୁ ଦିନ ବୃଦ୍ଧି ହେବ । କଟକଣା ରହିବ ନାହିଁ । ଲୋକେ ଅନ୍ନଛତ୍ର ଦେବେ ନାହିଁ । ଭିକ୍ଷା ଦେବେ ନାହିଁ । ଦେବା ଦେବୀ ଦ୍ରବ୍ୟ ଅପହରଣ କରିବେ । ବୃକ୍ଷମାନେ ଫଳ ଫଳିବେ ନାହିଁ । ଶସ୍ୟ ଉତ୍ପାଦନ ହେବ । ଗାଈମାନେ କ୍ଷୀର ଦେବେ ନାହିଁ । ଲୋକମାନେ ଶ୍ରୀହୀନ ହେବେ । କଳି କରିବେ । ବୁଦ୍ଧିହୀନ ହେବେ । ମନ କୁଟ କପଟ ସଙ୍ଗେ ଲାଗି ରହିବ । ଇନ୍ଦ୍ର ଯଥା ବିଧାନରେ ବର୍ଷା କରିବେ ନାହିଁ । ଶରୀର ରୋଗ ଯୁକ୍ତ ହେବ । ଔଷଧର ଗୁଣ ହରଣ ହେବ । ନଦୀନାଳ ଶୁଷ୍କ ହେବ, କୃଷି କମିବ, ଗୃହୀମାନେ ଗୃହ ଛାଡ଼ିବେ । ବଣ ଜଙ୍ଗଲ ଘର ଦ୍ୱାର ହେବ । ଲୋକମାନେ ରୋଗ ଶୋକରେ ଘାଣ୍ଟି ହେବେ । ସମୁଦ୍ର ଉଜାଣୀ ଉଠିବ । ବିତାସ ବହିବ ଯେ ଯାହାର ଧର୍ମ ଛାଡ଼ିବେ, ଅଧର୍ମ ଅମାନ୍ତ

କଟିବେ । ଟଙ୍କୁବନ୍ଧ ପ୍ରଥାବନ୍ଦ ହେବ । ପଇସାର ମୂଲ୍ୟ ରହିବ ନାହିଁ । ପୁଣି ପୃଥିବୀ ଶସ୍ୟ ଶ୍ୟାମଳା ହେବ । ଇନ୍ଦ୍ର ବୃଷ୍ଟି କରିବେ । କଳି ଗ୍ରାସରୁ ସତ୍ୟ ମୁକୁଳିବେ । ସତ୍ୟ ପ୍ରକାଶ ହେବେ । ଅନ୍ଧକାର ଯାଇ ଆଲୋକ ହେବ ।

ଶ୍ରୀ ଦୁଃଖବନ୍ଧୁ ନାୟକ,
ବି.ଏ, ବି. ଏଲ.

## ସ୍ୱପ୍ନବାଣୀ

ଗତ ବୈଶାଖ ମାସ ରାତ୍ରରେ ଦିନେ ବାହାରେ ଶୋଇଥିବା ସମୟରେ ନାନା ପ୍ରକାର ଚିନ୍ତା ମନକୁ ଆସିଲା । ସ୍ରଷ୍ଟାଙ୍କର ସୃଷ୍ଟି ବିଚିତ୍ରମୟ । ମହାପୁରୁଷମାନେ ତାଙ୍କର ମନ ମାପକାଠି ଦ୍ୱାରା ମାପ କରି ନ ପାରି ଏବଂ ଆଦିଅନ୍ତ କିଛି ସ୍ଥିର କରି ନ ପାରିବାରୁ ପ୍ରଭୁଙ୍କୁ ଅନାଦି ଆଖ୍ୟା ଦେଲେ । ଜୀବ ଜଗତରେ ମାନବ ଶ୍ରେଷ୍ଠ ଜୀବ । ଯାହାହେଲେ ମଧ୍ୟ ସଂସାରକୁ ଯେ ଆସିବ ସେ ଦିନେ ବିଦାୟ ନେବ । ଶାସ୍ତ୍ର ଅନୁସାରେ କଳିଷ୍ଠା ଏହା ମଧ୍ୟ ସମସ୍ତଙ୍କ ପାଇଁ ନୁହେଁ । କିଏ କେତେବେଳେ ସଂସାରକୁ ଆସୁଛି ଓ କିଏ କେତେବେଳେ ବିଦାୟ ନେଇ ଯାଉଛି ତାହାର ଠିକଣା ନାହିଁ । ବାଳବୃଦ୍ଧ ସମସ୍ତ ବଞ୍ଚି ରହିବା ହିଁ ସାର । ଯୁବକ ବେଳ ଯେତେବେଳେ କି ବୁଦ୍ଧି, ବଳ ସାହସ ଧୈର୍ଯ୍ୟ ଥାଏ ସେତେବେଳେ ଆମେ ମାୟା ମୋହ ନିଶା, ଘରଦ୍ୱାର ପୁଅ, ନାତି, ଜମି-ଜମା ଲାଳସାରେ ବ୍ୟସ୍ତ ରହି ସମୟ ଚାଲିଯାଏ । ଏ ସଂସାରରୁ ବିଦାୟ ନେଲେ ପୁନରାୟ ମନୁଷ୍ୟ ହିସାବରେ ଆସି ହେବକି ନାହିଁ

ଏହାର ପଠିକତା ନାହିଁ । କର୍ମ ଅନୁସରେ ଫଳ। ଆମ୍ଭେମାନେ ପୂର୍ବ ଜନ୍ମର କର୍ମ ଫଳ ନେଇ ଏ ଜନ୍ମରେ ଯଥା ଫଳ ଭୋଗ କରୁଅଛୁ । ପୁନଶ୍ଚ ଏ ଜୀବନରେ ଯାହା କରୁ ତାହା ଆଗାମୀ ଜନ୍ମରେ ଭୋଗ ହେବ । ଏ ସମ୍ବନ୍ଧରେ ଯୁକ୍ତି ତର୍କର କୌଣସି କାରଣ ନାହିଁ । କାରଣ ମହାପୁରୁଷମାନେ ସବୁ ସିଦ୍ଧାନ୍ତ କରି ଦେଇ ଯାଇଛନ୍ତି— ଯେ ଯାହା କରିବ ସେ ତାର କର୍ମଫଳ ଭୋଗ କରିବ । ଏହିପରି ଅନେକ ଭାବନା ମୋ ହୃଦୟରେ ଆସେ ।

ଗତ ବୈଶାଖ ମାସରେ ଅଯୋଧ୍ୟା ଯାଇଥିଲି । ପ୍ରଭୁଙ୍କୁ ଦର୍ଶନ କଲି । ସେଠାରେ ପୂର୍ବରୁ ପ୍ରତିଷ୍ଠିତ ହୋଇଥିବା ବିଦ୍ୟାଳୟର ଶିକ୍ଷକ ଓ ସାଧୁଙ୍କ ସହିତ କଥା ହେଲି । ସେମାନଙ୍କଠାରୁ ବୁଝିଲି ଯେ ୧୯୭୨ ସାଲରେ ଓଡ଼ିଶାରେ ସନାତନ ଧର୍ମ ଜାଗରଣ ନିମିତ୍ତ ଏକ ଆୟୋଜନ ଚାଲିଛି । ରାମ ଠାକୁରଙ୍କର ସାମନା ମଣ୍ଡପରେ ଶୋଇଲି ଅର୍ଦ୍ଧରାତ୍ରରେ ନିଦ ଭାଙ୍ଗିଲା । ମୋତେ ଯେପରି ଶୁଣାଗଲା ଯେ ଖଣ୍ଡେ ଦୂରରେ ନାମ କୀର୍ତ୍ତନ ହେଉଛି । ପିଲାମାନେ ଧର୍ମଶାଳା ଘରେ ଶୋଇଥିଲେ । ଏଣୁ କାହାରିକୁ କିଛି ନ କହି କିଛି ସମୟ ପରେ ଶୋଇ ପଡ଼ିଲି । ଶୋଇବା ପରେ ସ୍ୱପ୍ନରେ ମୋତେ ଜଣାଗଲା ଯେ ପାହାଡ଼ର ବିଭିନ୍ନ ସ୍ଥାନରେ ସାତଗୋଟି ମଠ ହୋଇଛି । ସେଠାରେ ଋଷିମାନେ ଅଛନ୍ତି । ବେଦ ପାଠ କରୁଛନ୍ତି । ହୋମ ଯଜ୍ଞ ହେଉଅଛି । ପ୍ରତି ମଠ ପାଖରେ ଚାଳିଶ ପଚାଶ ଅନେକ ଲୋକ ଅଛନ୍ତି । ଅନେକ ପାହାଡ଼ ଉପରକୁ ଉଠୁଛନ୍ତି ଏବଂ ଅନେକ ପାହାଡ଼ ତଳକୁ ଓହ୍ଲାଉଛନ୍ତି । ଭୋଜନ ଚାଲିଛି । ଅନେକ ଲୋକ ଖାଉଛନ୍ତି । ମୋତେ ଜଣେ ବୃଦ୍ଧବ୍ୟକ୍ତି କହୁଛନ୍ତି-ତୁମେ ଯାଅ ସୁବର୍ଣ୍ଣପୁର ଲୋକଙ୍କୁ ଡାକି ଆଣ । ଆଉଜଣେ କହିଲେ "ତୁମେ ତାଲିକା ଦେଖ ସାତ କୋଶ

ଭଚନ୍ତୁ କେଉଁ ଗ୍ରାମ ଲୋକ ଆସି ନାହାନ୍ତି ସେମାନଙ୍କୁ ଡ଼ାକି ଆଣ ସେତେବେଳକୁ ଗ୍ରାମମାନଙ୍କରେ ରୋଗ ଶୋକ ଲାଗିଛି । ଯେଉଁ ଲୋକମାନେ ଆସୁଛନ୍ତି ସେମାନେ ରୁଗ୍ଣ ଓ ଦୁର୍ବଳ ଦେଖାଯାଉଛନ୍ତି । ମୁଁ କଅଣ କରିବ ନ କରିବ ଭାବୁଛି-ନିଦ ଭାଙ୍ଗିଗଲା । ଦେଖିଲି ପାଖରେ କେହି ନାହାନ୍ତି । ରାତ ପ୍ରାୟ ତୃତୀୟ ପ୍ରହର ହେବ । କୌଣସିମତେ ରାତ କଟାଇ ସକାଳେ ଗାଧୋଇ ଠାକୁରଙ୍କୁ ଦର୍ଶନ କରି ପାହାଡ଼ଚଳଗ୍ରାମ ସଦେଇବେରେଣୀକୁ ଆସିଲି । ଶ୍ରୀ ମାୟାଧର-ସ୍ୱାଇଁଙ୍କୁ ସମସ୍ତ ସ୍ୱପ୍ନ ବୃତ୍ତାନ୍ତ କହିଲି । ସେ ମୋତେ ସପ୍ତଶଯ୍ୟାର ପ୍ରାଚୀନ କଥା କେତେକ କହିଲେ ଓ ଢେଙ୍କାନାଳ ଯାଇ ସଭାପତିଙ୍କ ସହିତ ପରାମର୍ଶ କରିବାକୁ କହିଲେ । ସଙ୍ଗେ ସଙ୍ଗେ ଢେଙ୍କାନାଳ ଯାଇ ସଭାପତିଙ୍କୁ ସାକ୍ଷାତ କରି ଗତ ରାତର ସ୍ୱପ୍ନ ବୃତ୍ତାନ୍ତ ଜଣାଇଲି ସଭାପତି ମହାଶୟ ମୋତେ ଉତ୍କଳ ପତ୍ୟସମାଜ ସମ୍ବନ୍ଧ କେତେକ କଥା କହିଲେ ଓ ସପ୍ତଶଯ୍ୟା । ସମ୍ବନ୍ଧରେ କେତେକ ଚିଠି ଆସିଥିବା କଥା କହିଲେ ଚିଠି ଖୋଜାଗଲା—ପରଜଙ୍ଗର ଜଣେ ବାବା ଶ୍ରୀ ଦାମୋଦର ଦାସ ତା ୨୦ । ୬ । ୭୭ରେ ତାଳଚେରଠାରୁ ସଭାପତିଙ୍କ ଠିକଣାରେ ଯେଉଁ ଚିଠି ଲେଖିଥିଲେ ତାହା ବାହାର କରି ପଢ଼ାଗଲା ଓ ତାର ସାରାଂଶ ଏଠାରେ ଦିଆଗଲା । ସେ ମହାଶୟ ତାଙ୍କ ଚିଠି ବିଷୟ ସଭାପତିଙ୍କୁ ଶୁଣାଇବାକୁ ଆସି ନପାରି ଫେରିଯାଇ ସପ୍ତଶଯ୍ୟାସ୍ଥିତ ରାମଲକ୍ଷ୍ମଣ ସୀତାଙ୍କୁ ସ୍ୱପ୍ନରେ ଦର୍ଶନ କରିଥିବା କଥା ଜଣାଇଛନ୍ତି ଏବଂ ପ୍ରଭୁଙ୍କ ସ୍ୱପ୍ନ ବାର୍ତ୍ତା ଜଣାଇଛନ୍ତି । ତାହା ନିମ୍ନରେ ଉଦ୍ଧାର କରାଗଲା—

"ବ୍ରାହ୍ମୀ ମହାନଦୀ ମଧ୍ୟଭାଗ ଭେଦି

ସପ୍ତଶଯ୍ୟା ପରିବତେ,

ସୀତା ଲକ୍ଷ୍ମଣ ବୀର ହନୁମାନ
ସପତ ଋଷି ସନ୍ଥତେ ।
ପଶ୍ଚିମ ଆକାଶେ ବାହୁବନ୍ଧ ମାଳ,
ପୂର୍ବେ ଭରତର ସୀମା
ଏହି ସାତଦୋଟେ ଲୀଳା ପ୍ରକଟିବୁ
ଭକତମାନଙ୍କୁ ଜଣା ।
କଳ ମେଲାଇଛୁ କରାଳର ଜାଲ,
ଗ୍ରାସିବାକୁ ଏ ସଂସାର ।
କଳିଯୁଗ ପ୍ରାଣୀ ସବୁ ଜାଣି ଶୁଣି,
ପଡ଼ିବେ କଳ ଫାନ୍ଦର
ମୋହମାୟା ନିଶା ଗ୍ରାସିବ ଜଗତ,
ପଥ ଥାଇ ହେବ ବଣା
ନନ୍ଦ ଥିବେ ଲୋକେ ମହତ ପଣକୁ
ଗର୍ବେ ହୋଇ ଉତମନା ।
ବାଟଘାଟ ଶୁଧ ନ ମେଣ୍ଟିବ ଲେଶ,
କ୍ଷୁଧା ଭୋଗୁଥିବେ ପ୍ରାଣୀ
ଅନଳେ ପତଙ୍ଗ ପର ଝାସ ଦେବେ
ଅନ୍ୟାୟ ଅଶାନ୍ତ ଜାଣି ।
କାହା କଥା କେହି ନ ଶୁଣିବେ ସବୁ
ସାନବଡ଼ ଏକଭାବ ।
ଢିବାଭାଗେ ଘର ପରମଣୁଥିବେ,
ଜାତି କୁଳ ଗୋଷ ଯିବ ।
ହିଂସା ଭାବ ବହି ଏ ଜନ ଜଗତ
ତାକୁ ମାରୁଥିବ ସିଏ ।

"ଅଶାନ୍ତିର ବହ୍ନି ଦେଶେ, ଗ୍ରାମେ, ଘରେ
ଜଳାଇ ବସିଛି ଛଏ ।
ଏ ଅନେକ ସ୍ଥିତ ଦେଖି କରି ଖ୍ରିଷ୍ଟ
ମୋ ଭକତ ଗଣମାନେ
ଗୋପନରେ କେତେ ଯୋଗ ସାଧୁଛନ୍ତି
ଲୁଚି ଛପି ରହି ବନେ ।
ଧାଉଁଛନ୍ତି ମୋତେ ପାଇବାକୁ କେତେ
ଭକତେ ହେବାକୁ ଗଣା ।
ଭକତ ତାଲିକା ତିଆରି ହୋଇଛି
ନାମ ହେଉଛି ଭରଣା ।
କଳି ତିନିଭାଗ ଭୋଗ କରୁଥିବ
ଯାହେ ଥିବ ଏକ ଅଂଶ ।
ଏ ବେଳେ ସଂସାରେ ଘୋଷଣା କରିବୁ
ସତ୍ୟ ଦେବ ପରକାଶ ।
ଆସିବେ ଭକତ ଗୁପତରେ କେତେ,
ହେବେ ସବୁ ଏକଠାବ ।
ବାସ୍ତବ ଠାରୁ ଉଡ଼ରଷ୍ଟ୍ର ଦେଶେ
ସତ୍ୟର ଭାବ ମିଳିବ ।"

ଏହି ଚଟି ଖଣ୍ଡିକ ପଢ଼ିସାରି ସଭାପତି ମୋ ହାତକୁ ବଢ଼ାଇ ଦେଇ ଚଟିର ମର୍ମ ବୁଝିବାକୁ କହିଲେ । କହିଲେ, ଆମେ ଉତ୍କଳ ସତ୍ୟ ସମାଜ ସମ୍ବନ୍ଧେ ସ୍ଥାନୀୟ ଲୋକମାନଙ୍କୁ ଜଣାଇବାକୁ ଇଚ୍ଛା କରୁଅଛୁ । ସହଜେ ଏ ଚଟିରେ ଉଲ୍ଲେଖ ଅଛି ସାତଦ୍ୱୀପ ଅନ୍ତର୍ଗତ

ଲୋକମାନଙ୍କୁ ଏ ଶଠିର ମର୍ମ ଶୁଣାଇ ଦେବାକୁ ହେବ । ତୁମେ ମଧ ଏପରି ସ୍ୱପ୍ନ ଦେଖିଅଛ ।

ଏହି ସବୁ ସମ୍ବନ୍ଧରେ ଆଲୋଚନା ହେବାରେ ଦେଖାଗଲା ଯେ—ଉତ୍ତରରେ ବ୍ରାହ୍ମଣୀ ନଦୀ, ଦକ୍ଷିଣରେ ମହାନଦୀ, ସପ୍ତଶଯ୍ୟା ଠାରୁ ସାତକୋଶ ଦୂର ହେବ । ପଶ୍ଚିମରେ ବାହାବନ୍ଧ ଶ୍ରେଣୀ କି ନାହିଁ । କେବଳ ହିନ୍ଦୋଳର ବାବନ୍ଧ ବୋଲି ଖଣ୍ଡିଏ ଗ୍ରାମ ଅଛି ଏବଂ ପ୍ରାଚୀର ଦରି ପର୍ବତ ଲାଗି ରହିଛି । ଏହା ସପ୍ତଶଯ୍ୟାଠାରୁ ସାତକୋଶ ଦୂର । ପୂର୍ବରେ ବିରାଟର ସୀମା । ବର୍ତ୍ତମାନର ଚୌଦ୍ୱାର ହିଁ ବିରାଟ । ସେଠାରେ ପ୍ରାଚୀନ ବିରାଟ ରାଜାଙ୍କ ରାଜଧାନୀ, ନଗର ଆଦିର ଭଗ୍ନାବଶେଷ ଅଛି । ତାର ସୀମାରେ ଖଣ୍ଡଣୀ ଗ୍ରାମ ଅବସ୍ଥିତ । ଏହା ମଧ୍ୟ ସପ୍ତଶଯ୍ୟା ଠାରୁ ସାତ କୋଶ ଦୂର ହେବ । ଏହି ଠାରୁ ପାଣ୍ଡବମାନେ ସପ୍ତଶଯ୍ୟା ଯାଇଥିବାର କିମ୍ବଦନ୍ତୀ ଅଛି । ସ୍ୱପ୍ନବାଣୀର ହିଙ୍ଖାପୁ, ତୃଙ୍ଖାପୁ ଓ ଅନ୍ୟାନ୍ୟ ପଦ ଗୁଡ଼ିକର ଅର୍ଥ ଯାହା ବାସ୍ତବିକ ବର୍ତ୍ତମାନ ଗ୍ରାମ ମାନଙ୍କରେ କଳିର କରାଳ ରହସ୍ୟ ବୁଝୁଛି । ସପ୍ତଶଯ୍ୟାରେ ହୋଇଥିବା ଅନୁଷ୍ଠାନର ଉଦ୍ଦେଶ୍ୟ ମଧ୍ୟ ୧୯୭୨ ମସୀହା ଠାରୁ ଦେଶରେ ସତ୍ୟ ଧର୍ମ ପ୍ରଚୁର ହେବ । ଏହାର ତାଲିକା ସେଠାରେ କରା ଯାଉଛି । କେନ୍ଦୁଝର ଜିଲ୍ଲା ଆନନ୍ଦପୁର ସବ୍‌ଡିଭିଜନସ୍ଥ ଖପରାଖାଇ ଗ୍ରାମର ଜଣେ ବୃଦ୍ଧ ବ୍ୟକ୍ତି ଶ୍ରୀ ଚତୁର୍ଭୁଜ ପଟ୍ଟନାୟକ ଏହି ସପ୍ତଶଯ୍ୟା ସମ୍ବନ୍ଧେ ଖଣ୍ଡିଏ ଦୀର୍ଘ ପଦ୍ୟ ଲେଖିଛନ୍ତି । ଯାହାକି ଖଣ୍ଡିଏ ଶ୍ରେଷ୍ଠ ପୁସ୍ତକ ହେବ । ସେଥିରେ ବିଶେଷ ଉଲ୍ଲେଖଯୋଗ୍ୟ ଯେ ସପ୍ତଶଯ୍ୟାରେ କାର୍ତ୍ତିକ ବ୍ରତ ଓ ବର୍ଷର ଚବିଶ ଏକାଦଶୀ କଲେ କଳି ଯୁଗରେ ପ୍ରାଣୀମାନେ ଉଦ୍ଧାର ପାଇଯିବେ । ଏହି ସପ୍ତଶଯ୍ୟା ପ୍ରବନ୍ଧ ମାନଙ୍କରେ ବର୍ଣ୍ଣିତ ଥିବା କଥା

ମଧ୍ୟ ପ୍ରମାଣ ସହିତ ଉଲ୍ଲେଖ କରିଛନ୍ତି । ଚାଳନେର ସହରର ଶ୍ରୀ ଜୟରାମ ବାବା ଜଣେ ଗୃହୀ ସନ୍ୟାସୀ । ଗତ ମାସ ହେବରୁ କଟକର ଦେଶରେ ସତ୍ୟ ଧର୍ମ ଜାଗରଣ ହେବ, ସେହି ଲକ୍ଷ୍ୟରେ ସେ ସପ୍ତଶଯ୍ୟା ଆସି ତୃପ୍ତି ପ୍ରାଣରେ ଆନୁଷ୍ଠାନିକ କାମରେ ଲାଗି ପଡ଼ିଛନ୍ତି । ଏଣେ ବାବା ଦାମୋଦର ଦାସଙ୍କର ପତ୍ର ଓ ମୋ'ର ସ୍ୱପ୍ନ ବାର୍ତ୍ତା ଶୁଣି ସଭାପତି ମହୋଦୟ କିଛି ସମୟ ବିଚାର କଲେ । ସପ୍ତଶଯ୍ୟା ସମ୍ବନ୍ଧେ ଓ ଉତ୍କଳ ସତ୍ୟସମାଜ ସମ୍ବନ୍ଧେ ଯାହା ତଥ୍ୟ ଥିଲା ସେ ସବୁ ମୋତେ ଦେଲେ ଏବଂ ଏହାକୁ ଛପାଇ ସାତକୋଶ ମଧ୍ୟରେ ଥିବା ଗ୍ରାମବାସୀଙ୍କ ମଧ୍ୟରେ ବାଣ୍ଟିଦେବା ନିମିତ୍ତ ଆଦେଶ କଲେ । ଏଣୁ ଆମ୍ଭେ ଏହା ଯଥା ସାଧ୍ୟ ମତେ ସଜାଡ଼ି ଲେଖି ଓ ଛପାଇ ଆପଣମାନଙ୍କ ଗୋଚରାର୍ଥେ ଜଣାଇଲୁ । ସାତକୋଶ ମଧ୍ୟରେ ଥିବା ଭକ୍ତ ମାନଙ୍କର ସଠିକ ନାମ ଧାମ ପ୍ରଭୁଙ୍କର ସ୍ୱପ୍ନ ବାଣୀରେ ଉଲ୍ଲେଖ ନ ଥିବାରୁ ଏହି ପତ୍ରିକା ସାତକୋଶସ୍ଥିତ ସମସ୍ତ ଗ୍ରାମ ବାସୀମାନଙ୍କୁ ଜଣାଇବା ସ୍ଥିର କରାଗଲା ।

ସଭାପତି ମହୋଦୟ କହିଲେ କି 'ସପ୍ତଶଯ୍ୟା ମଠମାନଙ୍କରେ ନାମ କୀର୍ତ୍ତନ, ହୋମ ଯଜ୍ଞ ହେଉଥିବା, ଲୋକମାନେ ଯିବା ଆସିବା କରୁଥିବା ସ୍ୱପ୍ନ ଉପରେ ବିଚାର ହେଲା କି ଗ୍ରାମେ ଗ୍ରାମେ ନାମ କୀର୍ତ୍ତନ ହେବାପାଇଁ ଲୋକମାନଙ୍କୁ ଜଣାଇ ଦିଆଯାଉ ଏବଂ ସପ୍ତଶଯ୍ୟାରେ ଥିବା ସାତଗୋଟି ମଠରେ ଉନ୍ନତି କଲେ ପ୍ରତି ୩୦/୪୦ ଖଣ୍ଡି ଗ୍ରାମ ବାସୀ ଭାଇମାନେ ସାତଗୋଟି ମଠକୁ ବାଣ୍ଟି ନେଇ ଯାଆନ୍ତୁ । ଏବଂ ବର୍ଷକେ ଅରେଘର ପିଛା ଶକ୍ତି ଅନୁଯାୟୀ ଏକମାଣଠାରୁ ଏକ ଗୌଣୀ ପର୍ଯ୍ୟନ୍ତ ଧାନ ବା ଚାଉଳ ସଂଗ୍ରହ କରାଇ ସଂପୃକ୍ତ ମଠକୁ ସାହାଯ୍ୟ କରନ୍ତୁ । ଏହି ପ୍ରସ୍ତାବ ଅନୁସାରେ ଆମ୍ଭେ ନିମ୍ନୋକ୍ତ ମତେ

ଅନୁରୋଧ କଲୁ, ଗ୍ରାମବାସୀ ଧର୍ମ ପ୍ରେମୀ ଭାଇମାନେ ଉକ୍ତ ବିଷୟ ହୃଦୟଙ୍ଗମ କରି ଏହାର ବିଚାର କରିବା ହେବେ । ଆମ୍ଭେ ଅନୁରୋଧ କରୁଯେ ଆପଣେ ଉକ୍ତ ପତ୍ରିକା ପାଇବା ମାତ୍ରେ ଗ୍ରାମର ସମସ୍ତ ଭାଇମାନଙ୍କୁ ଏକତ୍ର ଡ଼କାଇ ବସାଇ ସମସ୍ତଙ୍କୁ ଉକ୍ତ ପୁସ୍ତକ ବିଷୟ ଶୁଣାଇ ଦିଅନ୍ତୁ ଏବଂ ପ୍ରତି ଗ୍ରାମରେ ତିନିଜଣଙ୍କୁ ନେଇ ଗୋଟିଏ ସପ୍ତର୍ଷି ମଣ୍ଡଳ ଭିକ୍ଷାମାଗଣ କମିଟି ଗଠନ କରି ଦିଅନ୍ତୁ । ଏହି କମିଟି ସଭ୍ୟମାନେ ବର୍ଷକୁ ଥରେ ପୌଷମାସ ବହୁଳ ଅମାବାସ୍ୟାଠାରୁ ପୌଷ ପୂର୍ଣ୍ଣିମୀ ମଧ୍ୟରେ କ୍ଷମତା ଅନୁଯାୟୀ ଘରପିଛା ୧ମାଣଠାରୁ ୧ ଗୌଣୀ ପର୍ଯ୍ୟନ୍ତ ଧାନ ବା ଚାଉଳ ସଂଗ୍ରହ କରି, କରାଇ, ସଂଗୃହିତ ଧନରୁ ମଜଣି ଖର୍ଚ୍ଚ ବାଦ ଦେଇ, ଅବଶିଷ୍ଟ ଲବ୍‌ଧ ଧନ ସପ୍ତଶଯ୍ୟା ତପମଠ ଠାରେ ପହଞ୍ଚାଇ ତାହାରେ ଚଢ଼ାଇ ଦେବେ ।

ଏହି ଲବ୍‌ଧ ଧନରେ ସପ୍ତଶଯ୍ୟା ସଂପୃକ୍ତ ମଠ ମାନଙ୍କରେ ଥିବା ଋଷିମାନଙ୍କର ମୂର୍ତ୍ତି କାନ୍ତି ଓ ସେହି ମଠରେ ରହୁଥିବା ଜଣେ ଦୁଇଜଣ ସାଧୁ ଚଳିବେ । ବଳକା ଧନ ମଠର ଉନ୍ନତି କାର୍ଯ୍ୟରେ ଲାଗିବ । ପ୍ରତିବର୍ଷ ରାମ ନବମୀ ଦିନ ଆପଣମାନେ ସପ୍ତଶଯ୍ୟାଠାରେ ପହଞ୍ଚି ସଂପୃକ୍ତ ମଠମାନଙ୍କରେ ନାମ ଯଜ୍ଞ କରାନ୍ତୁ । ଏହାଦ୍ୱାରା ଆପଣ ଓ ଆମର ପିଲାମାନେ ସପ୍ତଶଯ୍ୟା ଆସି ପ୍ରଭୁଙ୍କୁ ଦର୍ଶନ କରିବା ସଙ୍ଗେ ସଙ୍ଗେ ସାଧୁ ସନ୍ଥଙ୍କର ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସିଲେ ନିଶ୍ଚୟ ଆଧ୍ୟାତ୍ମିକ ଦିଗରେ ଅଗ୍ରସର ହୋଇ ଜନ୍ମତିଳକ କରିବେ । ଏହା ସିଦ୍ଧାନ୍ତ ନେବାପରେ ସାତକୋଶରେ ଥିବା ଗ୍ରାମମାନଙ୍କର ତାଲିକା ପ୍ରସ୍ତୁତ ହେଲା । ନିମ୍ନୋକ୍ତ ମତେ ଏହି ମଠ ଗୁଡ଼ିକ ଗ୍ରାମମାନଙ୍କରେ ବାଣ୍ଟି ଦିଆଗଲା-- ଭୁଲ ବଶତଃ ଯେଉଁ ଗ୍ରାମ ଗୁଡ଼ିକ ତାଲିକା ଭୁକ୍ତ ହୋଇ ପାରିନାହାନ୍ତି

ଆପଣମାନେ ଦୋଷ ନଧରି ସପ୍ତଶଯ୍ୟା ଛଳ ମଠ ଠାରେ ଗ୍ରାମର ନାମ ଖାତାରେ ପୂରଣ କରାଇ ଦେବେ । ସଂପୃକ୍ତ ମଠମାନଙ୍କରେ ରହୁଥିବା ସାଧୁମାନେ ମଧ୍ୟ ସଂପୃକ୍ତ ଗ୍ରାମମାନଙ୍କୁ ବର୍ଷ ମଧ୍ୟରେ ଥରେ ଦୁଇଥର ଯାଇ ମଠର ସୁବିଧା ଅସୁବିଧା ଜଣାଇ ଗ୍ରାମବାସୀ ମାନଙ୍କୁ ଧର୍ମ ଉପଦେଶ ଦେବେ । ଏହା ବ୍ୟତୀତ ସପ୍ତଶଯ୍ୟାରେ ଜଗନ୍ନାଥ, ରାମ, କୃଷ୍ଣ, ଯୋଗମାୟା ମାନଙ୍କରେ ମୂର୍ତ୍ତି ତିଆରି କରାଯାଇ ପ୍ରତିଷ୍ଠା କରାଇବେ । ଧର୍ମ ପ୍ରେମୀ ଭାଇମାନେ, ଯେଉଁମାନେ ଅକ୍ଷୟ କୀର୍ତ୍ତି ସ୍ଥାପନ କରିବାକୁ ଇଚ୍ଛା କରନ୍ତି ସେମାନେ ଏଥିରେ ଅଂଶ ଗ୍ରହଣ କରନ୍ତୁ । ଉତ୍କଳରେ ସତ୍ୟଧର୍ମ ଜାଗରଣ ନିମିତ୍ତ ସଭ୍ୟ ହେବାପାଇଁ ସଭାପତିଙ୍କୁ ଜଣାଇ ସଭ୍ୟ ହୁଅନ୍ତୁ । ପ୍ରତି ପୂର୍ଣ୍ଣିମୀ ଦିନ ସପ୍ତଶଯ୍ୟା ଛଳମଠ ଠାରେ ଧର୍ମ ସଭାରେ ଯୋଗଦାନ କରି ଧର୍ମ ସମ୍ବନ୍ଧୀୟ ତଥ୍ୟ ଗ୍ରହଣ କରନ୍ତୁ । ଯାହାକି ଭଗବତ୍ ଦିଗରେ ଆଗେଇବାର ପଥ ଖୋଲିଯିବ । ଆମ୍ଭେ ଏ ବିଷୟ ଆପଣମାନଙ୍କ ଗୋଚରାର୍ଥେ ଜଣାଇ ଆଜି ଆପଣମାନଙ୍କ ଠାରୁ ବିଦାୟ ନେଲୁ । ଦୋଷ ତ୍ରୁଟି କ୍ଷମା ଗୁଣରେ କ୍ଷମା ଦେବେ, ଏତିକି ଅନୁରୋଧ । ଇତି ।

ଆପଣଙ୍କର

**ବାବା ରବିନାରାୟଣ ଦାସ**

# ମଠ ଓ ଗ୍ରାମ ତାଲିକା

## (୧ । ଅଙ୍ଗିରା ମହର୍ଷିଙ୍କ ମଠ)

୧ । ଖଣ୍ଡୁଣୀ, ୨ । ଛେନାଖିଆ, ୩ । ଚମ୍ପିଆ, ୪ । ଗଡ଼ଖୁର୍ଦ୍ଧା, ୫ । ଚୌଠା ପଡ଼ା, ୬ । ଭେଗଗ, ୭ । କୁଳେଇଲ, ୮ । ଗୋପୀନାଥ ପୁର, ୯ । ଗୁଣ୍ଡିଚ୍ଚପୁର, ୧୦ । କଖରା, ୧୧ । ଚନ୍ଦନପଦା, ୧୨ । ଯୋରନ୍ଦା, ୧୩ । ବେଣ୍ଠପଦା, ୧୪ । କଣକୋଲ ୧୫ । ମଞ୍ଜାରି ପଦା, ୧୬ । କନ୍ଦର ପୁର, ୧୭ । ଓସ୍ତିଆ, ୧୮ । ଫୁଲବାଡ଼, ୧୯ । କଦଳୀ ବାଡ଼, ୨୦ । ମାଳଦ୍ୱାରପୁର, ୨୧ । ସୁବର୍ଣ୍ଣ ପୁର, ୨୨ । କନ୍ଦ ପଦ୍ମାଁଗ, ୨୩ । ଦୋଡ଼ାବର ୨୪ । ରଛାଗଡ଼, ୨୫ । ଦୋଳପୁର; ୨୬ । ଜାଗିଆପଡ଼ା, ୨୭ । ସଁପଡ଼ା, ୨୮ । ବଡଭୂଇଁ, । ୨୯ । ଝଣ୍ଡୁହତା, ୩୦ । ଗୋପାଳ ପୁର ।

## (୨ । ବଶିଷ୍ଠ ମହର୍ଷିଙ୍କ ମଠ)

୧ । ତେନ୍ତୁଳିଆ, ୨ । ସାରଡ଼ାଙ୍ଗ, ୩ । ବଉଳାଙ୍ଗ, ୪ । ବନ୍ଦାଳ ୫ । ପାଇକାଆଁଦ୍ଧ, ୬ । ପୁରୁଣା ଟିଗିରିଆ, ୭ । ଟିଗିରିଆ ଗଡ, ୮ । ଖମଣିଆ, ୯ । ପାଞ୍ଚଗାଁ, ୧୦ । ନୂଆ ସାହ୍ଣି, ୧୧ । ଗୋଡ଼ଖୁରିଆ ୧୨ । ଭୁରୁଡା, ୧୩ । ଅଟଳକୋଠ, ୧୪ । ହରଡ଼ା ପଣି, ୧୫ । ବସ୍ତପୁର, ୧୬ । ରଥ ପଦା, ୧୭ । ଗୋବନ୍ଦ ପ୍ରସାଦ, ୧୮ । ରଣୀପାଳ, ୧୯ । ବାଲବୋରେଇ, ୨୦ । କଳାଙ୍ଗ, ୨୧ । କପିସାହ୍ଣି, ୨୨ । ଧାଣମୁର୍ଗୀ, ୨୩ । ଖଟିପିର, ୨୪ । କୋଡମା ୨୫ । ଓସ୍ତପାଳ ।

## ୩ । ଭୃଗୁ ମହର୍ଷିଙ୍କ ମଠ

୧ । ବାଂବନ୍ଧ, ୨ । ଗୁଆ ଗଣ୍ଡଆ; ୩ । ବ୍ରାହ୍ମଣିଆ ଟାଳ, ୪ । ଗଞ୍ଜିରା ୫ । ଟୋଡ଼ା ଗୁଣ୍ଡିଆ, ୬ । ଡଲକ, ୭ । ବନ୍ଦନ୍ଦେଇ. ୮ । କ୍ରୁଞ୍ଚୁଣିଆ ୯ । ଙ୍କରଡ଼ାଙ୍ଗ, ୧୦ । ସୁଦାଢ, ୧୧ । ରସାହିଂନ୍ଧ, ୧୨ । ଛେନ୍ଦୁକାଆ-ପଦା, ୧୩ । ବଡ଼ ବଉଳ ପୁର, ୧୪ । ସାନ ବଉଳ ପୁର, ୧୫ । କାଟଣୀ, ୧୬ । ଖାର ଗାଡ଼ିଆ, ୧୭ । ଝୁଉଦାଳ, ୧୮ । ନୂଆ ସଦାଶିବ ପୁର, ୧୯ । ପୁରୁଣା ସଦାଶିବ ପୁର ୨୦ । କାଉଦା, ୨୧ । ଭୋଜଦେଇ ପୁର, ୨୨ । ଗେଙ୍ଗୁଟିଆ, ୨୩ । ଜହ୍ନି ଛଏଳା, ୨୪ । ସାଙ୍କୁଲେଇ, ୨୫ । ହଳଦୀବାଘ, ୨୬ । ଛଉଙ୍କ, ୨୭ । ନୂଆଗାଁ, ୨୮ । ଗୃଉଳିଆ, ୨୯ । ଡାନ୍ଦର ନାଳୀ, ୩୦ । ଦୁଧକାଟଣୀ, ୩୧ । ବେଲଟିକଣା, ୩୨ । ଜର୍ଣ୍ଣି ଗ, ୩୩ । କାଇମାଟି, ୩୪ । ଛଣ ବୋଲୁଅ, ୩୨ । ବଗଡ଼ିଆ, ୩୩ । ରମ୍ଭା, ୩୪ । ମହାଲକ୍ଷ୍ମୀ ପୁର ।

## ୪—ମାର୍କଣ୍ଡ ମହର୍ଷୀଙ୍କ ମଠ

୧ । ନୃଷୃଗ, ୨ । ମାଳୀସାହି, ୩ । ବଳଦିଆ ବନ୍ଧ, ୪ । ନଡ଼ିଆଳୀ, ୫ । ବଡ଼ କୁରୁମ ଟାଙ୍ଗର, ୬ । ସାନ କୁରୁମ ଟାଙ୍ଗର ୭ । ମହୁଲ ପଡା, ୮ । ଦନ୍ତ କୋରୁଅ, ୯ । ଜଜପୁର, ୧୦ । ଗେଡ଼ାନ୍ଧ ପୁର; ୧୧ । ସିଆଣିଆ, । ୧୨ । ଡାଳବରକୋଟ, ୧୩ । ମାଣିପୁର, ୧୪ । ଦେପଡ଼ା, ୧୫ ।ଉଆସ ଡ଼ିହ, ୧୬ । ଡଲକ ୧୭ । ରେଗଡ଼ା, ୧୮ । ଦୋରଡ଼ି, ୧୯ । ଇଷତ୍ର, ୨୦ । ଚୂନପଦା. ୨୧ । ହେମ ମାଳପୁର, ୨୨ । ଆଠଗଡ଼ ଟାଉନ, ୨୩ । ବୀର କଶୋର ପୁର, ୨୪ । ରାଧା ଗୋବନ୍ଦ ପୁର, ୨୫ । ବାସୁଦେଇ ପୁର, ୨୬ । ସଠିଲ, ୨୭ । କୁଆଁଳ, ୨୮ । ଡାଳବସ୍ତ, ୨୯ । କେନ୍ଦା-ସାହୁ ପାଟଣା, ୩୦ । ବାଇଧର ପାଟଣା ।

## ୫—ପୁଲହ ମହର୍ଷୀଙ୍କ ମଠ

୧ କୋରଙ୍ଗା, ୨ । ପାମାଳ, ୩ । ପରବଡ଼ିଆ, ୪। ସମସର ପୁର, ୫ । ଚେରେଇ ପାଟଣା, ୬ । ରଘୁନାଥ ପୁର, ୭ । ଜଗନ୍ନାଥ ପୁର, ୮ । ଅମୃତମଣୋଇ ଧାଟଣା, ୯ । ଶଙ୍କର ପୁର, ୧୦ । କୋଟଣ ପାଟଣା, ୧୧ । ଚେଲୁକ ପାଟଣା, ୧୨ । ମାଛୁଆ ପାଟଣା, ୧୩ । ଇଚ୍ଛାପୁର, ୧୪ । ଅରଖ ପାଟଣା, ୧୫ । ମାଟିକୋଟ, ୧୬ । ପଚଣ୍ଡା, ୧୭ । ଧୀର ପାଟଣ, ୧୮ । କାମଧେନୁ କୋଟ, ୧୯ । ନୂଆ ଗାଁ, ୨୦ । କୃଷ୍ଣ ପ୍ରସାଦ, ୨୧ । ଚନ୍ଦାପଡ଼ା ୨୨ । ପୃଚ୍ଛ ସାହି, ୨୩ । ବାଲ୍ମୀମ୍ବା ୨୪ । ସଗଳ ପାଟଣା ୨୫ । ଗଇଡ଼ଡ଼ା, ୨୬ । ମଧସାହୁ ପାଟଣା, ୨୭ । ଗଜୁଆ ପାଟଣା ୨୮ । ଓଳକ୍ଷୁମା, ୨୯ । ଗଞ୍ଜେଇ ଡ଼ଡ଼ା, ୩୦ । ଝୁମ୍ପୁଡ଼ିଆ, ୩୧ । ବସ୍ତୁପୁର ।

## ୬—ପୁଲସ୍ତ୍ୟ ମହର୍ଷିଙ୍କ ମଠ

୧ । ଭପୁର, ୨ । କାକଡ଼ ଭାଗ, ୩ । କୋଇଲପଙ୍କି ୪ । ବମ୍ବଲ, ୫ । ସରଦେଇପୁର, ୬ । ଝିଙ୍କରଗଡ ୭ । ସଂସାଲ ୮ । ମୁଣ୍ଡାସାହି, ୯ । ଗୋହିରି ଖାଲ, ୧୦ । ଝୁଣ୍ଟୁଝୁର ୧୧ । ନମିରଗ୍ର, ୧୨ । ସତଁ ୧୩ । କେରେଇଗାଡ଼ିଆ ୧୪ । କଙ୍କଡ଼ାହାଡ଼, ୧୫ । ନରଟପୁର, ୧୬ । ମଙ୍ଗଳପୁର, ୧୭ । ନଞ୍ଜୁପୁର, ୧୮ । ବନମାଳୀ ପ୍ରସାଦ, ୧୯ । ପାଞ୍ଚହାହାଣିଆ ୨୦ । ବଦାବନ୍ଧ, ୨୧ ହରିପୁର, ୨୨ । ବେଣ୍ଟେକଆ ୨୩ । ଇନ୍ଦ୍ରପୁର ୨୪ । ଲୁଣି, ଗୁଡିଆ, ୨୫ । ଡେଙ୍ଗବୋରେଇ ୨୬ । କାଣ୍ଡବନ୍ଧା, ୨୭ । ବଳରାମ ପୁର, ୨୮ । ସାରୁଆ ପଡ଼ା, ୨୯ । ଛାମଣ୍ଡା। ୩୦ । କାଶିଆଡ଼ଡ଼ା, ୩୧ । ମହୀଧର ପୁର ।

## ୭—ଅତ୍ରି ମହର୍ଷିଙ୍କ ମଠ

୧ । ବେରକ, ୨ । ଗୃଦ୍ଧିପୁର, ୩ । ଗଦାଶୀଳା, ୪ । ମାଳାମ୍ବର ପୁର, ୫ । ସିମିଲଛ ୬ । ଅଙ୍କଗନ୍ତ ପୁର, ୭ । ଘଞ୍ଚୁପଟୀ ୮ । ଗୁଣ୍ଡୁଗୃପଡ଼ା, ୯ । କୋଇଅାଁ, ୧୦ । ବଳଭଦ୍ରପୁର ୧୧ । ନରଣପୁର, ୧୨ । ରଞ୍ଜା, ୧୩ । କାଙ୍କଡ଼ପାଳ; ୧୪ । ଢ଼େଙ୍ଗସିଙ୍ଗ ୧୫ । ସିମିଳିଆ, ୧୬ । ଢେଙ୍କାନାଳ ଟାଉନ, ୧୭ । ସରଖିଆ ୧୮ । କରଡ଼ା ନାଳୀ, ୧୯ । ସଙ୍କର୍ଗ, ୨୦ । କାଇମାଟି, ୨୧ । ଛଣ ବୋଲୁଅ, ୨୨ । ଆନନ୍ଦ ୨୩ । ହରେକୃଷ୍ଣ ପୁର, ୨୪ । ଗନ୍ଧମର୍ଦ୍ଦନି, ୨୫ । ଗୋବନ୍ଦ ପୁର, ୨୬ । କାଠଗଡ଼ା ୨୭ । କଣ୍ଟେଇ କୋଳିଆ, ୨୮ । ମହୁଲିଆ ପାଟ, ୨୯ । ଗଜମଗ୍ର ୩୦ । କମନଙ୍ଗ, ୩୧ । ସଦେଇବେରେଣୀ, ୩୨ । ପାନ୍ଦୁଆଟ, ୩୩ । ପଦ୍ମନଭ ପୁର, ୩୪ । ବାଜଗ ପଲ୍ଲୀ; ୩୫ । ବଡ଼ଗିଲ୍;

———

# ଗୁରୁକୁଳ ଆଶ୍ରମର ଆୟ ବ୍ୟୟ ତାଲିକା ।

ତା ୨୯ । ୧୧ । ୭୭ ଠାରୁ ତା ୫ ।୧୧ । ୭୭ ପର୍ଯ୍ୟନ୍ତ କ୍ୟାସ ବହି
ହିସାବ ବିବରଣୀ

## ଜମା

| | | |
|---|---|---|
| ୧ । ବଦାନ୍ୟ ବ୍ୟକ୍ତିମାନଙ୍କ ଦାନ | ଟ | ୬୩୧-୦୦ |
| ୨ । ରସିଦ ବହି ଜରିଆରେ ଅସୁଲ | ଟ | ୧୮୪୫-୩୦ |
| ୩ । ସପ୍ତଶଯ୍ୟା କମିଟି ପକ୍ଷରୁ ସାହାଯ୍ୟ | ଟ | ୬୦-୦୦ |
| | ଟ | ୨୫୩୬-୩୦ |

## ଖର୍ଚ୍ଚ

| | | |
|---|---|---|
| ମାଷ୍ଟ୍ରମାନଙ୍କ ଦରମା | ଟ | ୧୬୦-୦୦ |
| କର୍ମୀମାନଙ୍କର ଦରମା | ଟ | ୬୫୦-୦୦ |
| ସପ୍ତଶଯ୍ୟା ଚଳମଠ ତିଆରି | ଟ | ୧୨୮-୦୦ |
| କୃଅଖୋଳା | ଟ | ୬୫-୦୦ |
| ଚଳମଠ ବାଡ଼ାବନ୍ଧ | ଟ | ୨୪-୦୦ |
| ସପ୍ତଶଯ୍ୟା ଗୁରୁକୁଳ ଆଶ୍ରମ ବାଗବଗିଚ୍ଛ ତିଆରି ଜଙ୍ଗଲ, ସଫେଇ | ଟ | ୮୦-୦୦ |
| ସନ୍ ୧୯୭୭ ରାମ ନବମୀ ସଭା ଉପଲକ୍ଷେ ଖର୍ଚ୍ଚ | ଟ | ୧୩୦-୦୦ |

| | | |
|---|---|---|
| କଦଳୀ ଗଛଲଗାଇବାପାଇଁ ଖର୍ଚ୍ଚ ଓ ଲଗାପିବା | ଟ | ୫୦-୦୦ |
| ଗୁରୁମାନଙ୍କର ଖାଇବାଲୁଗାପଟା ଓ ପଦ୍ୱପବାଣି ଖର୍ଚ୍ଚ | ଟ | ୧୨୪୭-୦୦ |
| ଖର୍ଚ୍ଚ | ଟ | ୨୫୨୭-୦୦ |

## ଉତ୍କଳ ସତ୍ୟ ସମାଜର ନିୟମାବଳୀ ଏବଂ କେତେକ ଉପଦେଶାବଳୀ

ନିୟମାବଳୀ—

୧ । ସତ୍ୟ, ଶାନ୍ତି, ଦୟା, କ୍ଷମା ପ୍ରତି ଅନୁରାଗ ଥିବ ।

୨ । ସକଳ ଧର୍ମ ପ୍ରତି ଶ୍ରଦ୍ଧାଭକ୍ତ ଥିବ ।

୩ । ଆତ୍ମ ପ୍ରଶଂସା କରୁନଥିବେ ।

୪ । ଶାସ୍ତ୍ରବାକ୍ୟ ପ୍ରତି ବିଶ୍ୱାସ ଥିବ ।

୫ । କୁ ଅଭ୍ୟାସ ପରିତ୍ୟାଗ କରିଥିବେ ।

ଉପଦେଶାବଳୀ—

୧ । ଏ ସୃଷ୍ଟି ଭଗବାନଙ୍କର, ଜୀବ ଜଗତ ଖେଳନା ମାତ୍ର ।

୨ । ଆତ୍ମାର କୁସୁମ ଯେବେ ନ ପାର ଫୁଟାଇ, ପ୍ରେମ ନାମେ କିଛି ମାତ୍ର ଅଧିକାର ନାହିଁ ।

୩ । ସତ୍ ଜ୍ଞାନ ଓ ବିପୁଳ ସମ୍ପତ୍ତି ଖୁବ୍ କମ୍ ଲୋକଙ୍କୁ ଏକ ସମୟରେ ମିଳି ଥାଏ ।

୪ । ସମସ୍ତ ସଦ୍‌ଗୁଣର କେନ୍ଦ୍ରସ୍ଥଳୀ ହେଲା ତୁମର ଆତ୍ମସମ୍ମାନ ।

୫ । ଶ୍ରୀ ଭଗବାନଙ୍କ ଠାରେ ନିଷ୍କାମ ଭକ୍ତି ଓ ଦୃଢ଼ ବିଶ୍ୱାସ ରଖ, କିନ୍ତୁ ନିଜ କର୍ତ୍ତବ୍ୟରେ ଟିକିଏ ହେଲେ ହେଳା କର ନାହିଁ ।

୬ । କୋଟିଏ ଗ୍ରନ୍ଥରେ ଯାହା ଉଲ୍ଲେଖ କରାଯାଇ ପାରେ ତାହା ଗୋଟିଏ ପଦରେ କହିବାକୁ ଗଲେ, ଏତିକି କୁହାଯାଇ ପାରେ ଯେ ବ୍ରହ୍ମ ହିଁ ସତ୍ୟ, ଜଗତ ମିଥ୍ୟା ।

୭ । ଜୀବ ଓ ବ୍ରହ୍ମ ପରସ୍ପର ଅଭିନ୍ନ । ଏକ ଶରୀରରେ ବାସ କରିଥାନ୍ତି ।

୮ । ଶତ୍ରୁ ପାଇଁ ତୁମେ ଯେଉଁ ନିଆଁ ଜାଳିବ, ସେ ନିଆଁ ତୁମକୁ ଜାଳି ପୋଡ଼ି ମାରିବ ।

୯ । ମନୁଷ୍ୟ ଭୟରୁ ମୁକ୍ତି ପାଇବାର ଏକ ମାତ୍ର ଉପାୟ ଭଗବାନଙ୍କୁ ଭୟ କରିବା ।

୧୦ । ମନୁଷ୍ୟ ଭଗବତ ପଥରେ ଯିବାକୁ ଇଚ୍ଛାକଲେ ଜ୍ଞାନ, ଆଲୋକ ରୂପେ ପଥ ଦେଖାଇ ଦିଅନ୍ତି ।

୧୧ । ଅନ୍ୟର ମଙ୍ଗଳ କରିବା ଅର୍ଥ ନିଜେ ଭଲ ହୋଇଯିବା ।

୧୨ । ପ୍ରତ୍ୟେକ ମହତ କାର୍ଯ୍ୟ ପ୍ରଥମେ ଅସମ୍ଭବ ପରି ଜଣାପଡ଼େ । ମୋହ ତୁଟିଗଲେ ସମ୍ଭବ ହୋଇଥାଏ ।

୧୩ । ଦୁଇଟି ଆଖି ଥିବା ସ୍ଥଳେ ଗୋଟିଏ ପାଟି ଥିବାର କାରଣ କହିବାର ଦୁଇ ଗୁଣ ଦେଖ ।

୧୪ । ସବୁଠାରୁ ବଡ଼ ଅଜ୍ଞତା ହେଉଛି ଗୋଟିଏ ବିଷୟରେ ଖୁବ୍ ଜାଣିଛି ବୋଲି ଗର୍ବ କରିବା ।

୧୫ । ପରର ଦୁର୍ଗୁଣ ଦେଖିବା ପୂର୍ବରୁ ନିଜର ଦୁର୍ଗୁଣ ବିଚାର କରି ଦେଖ ।

୧୬ । ଚିଡ଼ିବାଟି ଧନ ନୁହେଁ ଋଣ, ଚିଡ଼ିବା ଲୋକକୁ ଯୋଡ଼ିବୁ

ହସ୍ତ । ହସ୍ତ ହସେ ଯେବେ ହୋଇବୁ ଠିଆ, ନଷ୍ଟେ ଭଗି ପ୍ରାଣେ ଆସିବ ଦସ୍ୟୁ ।

୧୭ । ସତ୍ ଚିନ୍ତା ଉପରେ ଅହଙ୍କାର ପଡ଼ିଗଲେ, ବୁଦ୍ଧି, ବିବେକ ବିଚାର ଜ୍ଞାନ ଚଳକୁ ଦବିଯାନ୍ତି ।

୧୮ । ଅଜ୍ଞତା ହେଉଛି ସନ୍ଦେହର ଜନ୍ମ ଦାତ୍ରୀ ।

୧୯ । ଜଣେ ସତ୍ ଲୋକର ଶ୍ରେଷ୍ଠଟି କିଣି ନେବାର ସମ୍ପତ୍ତି ଏ ପୃଥିବୀରେ ନାହିଁ ।

୨୦ । ଧୈର୍ଯ୍ୟହିଁ ସବୁଠାରୁ ବଡ଼ ପ୍ରାର୍ଥନା ।

୨୧ । ଯେ ଦଣ୍ଡ ଦେଇ ପାରନ୍ତି, ତାଙ୍କଠାରେ କ୍ଷମାଗୁଣ ଥାଏ ।

୨୨ । କୃପଣ ମଧ୍ୟ ଜଣେ ଦାତା । ସେ ସଂସାରରୁ ବିଦାୟ ନେଇ ଗଲାବେଳେ ସମସ୍ତ ସମ୍ପତ୍ତି ଜଣକୁ ଦେଇ ଯାଇଥାଏ । ବଞ୍ଚି ଥିବା ସମୟଗୁଡ଼ିକ ଗଣ୍ଡେ ଖାଇ ଜଗୁଆଳି କାମ କରୁଥାଏ ।

୨୩ । ଈଶ୍ୱର ପ୍ରାପ୍ତିର ପ୍ରକୃଷ୍ଟ ପନ୍ଥା ହେଉଛି ନିଷ୍କାମ ସେବା ।

୨୪ । ଧୈର୍ଯ୍ୟ ସନ୍ତୋଷର ରବି ।

୨୫ । ବିପ୍ରର ଗୃହ ଉଚ୍ଚ ଭାବନାର ପିଠସ୍ଥଳ ।

୨୬ । ପରର ମଙ୍ଗଳ କରିବା ପୂର୍ବରୁ ମଙ୍ଗଳନିଜର ସାଧିତ ହୋଇଥାଏ

୨୭ । ଅହଙ୍କାର ମନୁଷ୍ୟକୁ ସବୁବେଳେ ତାର କବଳକୁ ଟାଣି ନେବା ପାଇଁ ଚେଷ୍ଟା କରେ ।

୨୮ । ପ୍ରଶଂସା ସମୟେ ସମୟେ ଗାଳିଠାରୁ ଅଧିକ ବିପଜ୍ଜନକ ବିଶେଷ ଭୟଙ୍କର ଭୟସୂଚୀ ।

୨୯ । ଯେ ଅନ୍ୟ ପ୍ରତି କୁଭାଷା ପ୍ରୟୋଗ କରେ, ସେ ନିଜର ଅହଂକାର ଓ ନିଜର ନିର୍ବୋଧତାର ପରିଚୟ ଦେଇଥାଏ ।

୩୦ । ଧର୍ମକୁ କେହି ଲୋପ କରି ପାରିବେ ନାହିଁ । ଆକାଶରେ ତାରକୁ ଚନ୍ଦ୍ର ବଉଦ ଲୁଚାଇବା ଭଳି, ବଉଦ ଗୁଞ୍ଚିଗଲେ ତାରା ଦେଖାଯାଏ ।

୩୧ । ମୃତ୍ୟୁର ଚିହ୍ନ ପ୍ରତିମା ବିଚ୍ଛେଦ ବେଳରେ ଦେଖା ଦେଇଥାଏ ।

୩୨ । ଅନ୍ୟକୁ ବହୁବାର କ୍ଷମା ଦିଅ କିନ୍ତୁ ନିଜକୁ ଥରେ ହେଲେ କ୍ଷମା ଦିଅ ନାହିଁ ।

୩୩ । ଅନ୍ୟକୁ ଅନୁକରଣ କରି ନିଜେ ଭଲମନ୍ଦ ବିଚାର କରି ପଥ ଚାଲିବା ଉଚିତ ।

୩୪ । ମନ୍ଦ ଅଭ୍ୟାସ ପରିତ୍ୟାଗ କଲେ ସତ୍ପଥ ମିଳେ ।

୩୫ । ଆଜିକା କାମ କାଲି ପାଇଁ ବାକି ରଖ ନାହିଁ ।

୩୬ । ପ୍ରତିଦିନ ସନ୍ଧ୍ୟାବେଳେ, ଦିନ ଭିତରେ କରିଥିବା ଭଲ ଓ ମନ୍ଦ କାର୍ଯ୍ୟର ତାଲିକା କରିନେଇ ସଂଶୋଧନ କରିନିଅ ।

୩୭ । ନିଜର ବଡ଼ିମା ପଣ ନ ଦେଖାଇ ବରଂ ନିଜେ ଉଦାରତା ପଣିଆ ଦ୍ୱାରେ ଦେଖାଅ ।

୩୮ । କହିବା ପୂର୍ବରୁ ଦୁଇଥର ଓ କରିବା ପୂର୍ବରୁ ତିନିଥର ଭାବ ।

୩୯ । କାହାରି ପଛରେ କିଛି କର ନାହିଁ । କାହା ଦୋଷ ପଛରେ ଧର ନାହିଁ । ପଛରେ କାହାକୁ ଥଟ୍ଟା କର ନାହିଁ ।

୪୦ । ତୁମର କେହି କ୍ଷତି କଲେ ଦହିଯା, ସେକଥା ଭୁଲିଯାଅ ଏବଂ ତାଙ୍କଭଲ ପାଇଁ ଚିନ୍ତାକର ।

୪୧ । ଶତ୍ରୁ ହେଲେ ମଧ୍ୟ ବିପଦ ବେଳେ ତାଙ୍କୁ ସାହାଯ୍ୟ କର ।

୪୨ । ଯେ କୌଣସି ଦୁଃଖ ଆସିଲେ ସହିଯିବାପାଇଁ ଚେଷ୍ଟାକର । ରାଗ ଓ କ୍ରୋଧ ଏ ଦୁହେଁ ବଡ଼ ଶତ୍ରୁ ।

୪୩ । ନିଜର ଭୁଲ ନିଜେ ମାନିଯିବା ଉଚିତ ।

୪୪ । କେହି ତୁମକୁ ଥଟ୍ଟା କଲେ, ନିରବ ରହିଯାଅ । ରାଗ ନାହିଁ ସବୁ କ୍ଷେତ୍ରରେ ବିଚାର କରି କହ ।

୪୫ । ଜୀବନରେ ଯେ କେହି — ନିର୍ଦ୍ଦିଷ୍ଟ ପଥ ଧରିବା ଉଚିତ ।

୪୬ । ସମସ୍ତ ମୂଳରେ ଭଗବାନଙ୍କ ପ୍ରତି ଆସ୍ଥା ରଖି ଆଗୁସାର ହୁଅ ।

୪୭ । ଭଲମନ୍ଦ ସବୁ ପ୍ରଭୁ ଭିଆଣ ।

୪୮ । ପ୍ରଭୁଙ୍କ ନିକଟରେ ଆତ୍ମ ସମର୍ପଣ କଲେ ସମସ୍ତ ଦୁଃଖ ଦୂରଭୂତ ହୁଏ ।

୪୯ । ଦୃଢ ବିଶ୍ୱାସ ଥିଲେ ପଥ ସୁଗମ ହୁଏ ।

୫୦ । ମାନବ ଜୀବ ଜଗତରେ ଶ୍ରେଷ୍ଠ ଜୀବ । ବୁଦ୍ଧି, ବିବେକ, ଈଶ୍ବର ଜ୍ଞାନ, ସଂସାରରେ ଶ୍ରେଷ୍ଠ ସମ୍ପଦ ।

ଶ୍ରୀ ଗୋପିନାଥ ରାଉତ
ଗ୍ରାମ—ଅମ୍ବିବାହାଳୀ
ଜି: ଢେଙ୍କାନାଳ

# ଆହ୍ୱାନ

ପ୍ରାଚୀନ ଆର୍ଯ୍ୟ ସଂସ୍କୃତିର ଗୌରବମୟ ଇତିହାସ ଆଲୋଚନା କଲାବେଳେ ଆମେ ଦେଖୁ, ବର୍ତ୍ତମାନ ସମାଜରେ ଆଧ୍ୟାତ୍ମିକ ଚିନ୍ତାଧାରା କ୍ରମେ କ୍ଷୀଣରୁ କ୍ଷୀଣତର ହେବାକୁ ଯାଉଅଛି । ଧର୍ମପଥ ସଙ୍କୁଚିତ ହୋଇ ଯାଉଅଛି । ସମାଜରେ ନାନା ବିଶୃଙ୍ଖଳା ଭାବ ଦେଖା ଦେଉଅଛି । ଏହା ଫଳରେ ହିନେ ପରିସ୍ଥିତି ଅତି ଦୁଃଖ ମୟ ହେବ । ସମଗ୍ର ମାନବ ଜାତି ଉପରେ ଅଧର୍ମର ଛାୟା ପଡ଼ିବ । ସେତେବେଳେ ଆମେ ବୁଝିବା ପ୍ରକୃତ ଧର୍ମର ମହତ୍ତ୍ୱ କଣ । ବର୍ତ୍ତମାନ ଆମ୍ଭେମାନେ ମୋହଗ୍ରସ୍ତ ହୋଇ ମାର୍ଗ ଭ୍ରଷ୍ଟ ହୋଇ ଧର୍ମ ପଥକୁ ଏଡ଼ି କଳୁଷିତ ମନୋଭାବ ନେଇ ଯେପରି କର୍ମରେ ଲିପ୍ତ ରହିଅଛୁ

ଏହି କର୍ମର ମନ୍ଦଫଳ ଦିନେ ସମସ୍ତଙ୍କୁ ଭୋଗ କରିବାକୁ ପଡ଼ିବ । ଆଜି ପୃଥିବୀର ବିଭିନ୍ନ ରାଷ୍ଟ୍ରରେ ଯେଉଁ ଅଶାନ୍ତିର ବାତାବରଣ ଦେଖା ଦେଇଛି । ଏହାକୁ ଲକ୍ଷ କରି ଓ ଚିନ୍ତା କରି ଦେଶର ଜନ ନାୟକମାନେ କହି ସାରିଲେଣି ଯେ ଆଧ୍ୟାତ୍ମିକ ଚିନ୍ତାଧାରା ହ୍ରାସ ପାଇବା ହିଁ ଏହାର ମୂଳ କାରଣ । ପୃଥିବୀକୁ ଧ୍ୱଂସ ମୁଖରୁ ଉଦ୍ଧାର କରିବାକୁ ହେଲେ ଭଗବତ ଚିନ୍ତାଧାରା ଏକମାତ୍ର ଉପାୟ, ଜନ ଜଗତର କଲ୍ୟାଣ ପାଇଁ ପ୍ରତିଷ୍ଠା ହେବା ଏକାନ୍ତ ବାଞ୍ଛନୀୟ, ଏଥିପାଇଁ ଶ୍ରୀ ଭଗବାନଙ୍କ ନିକଟରେ ଆତ୍ମ ନିବେଦନ ଜଣାଇବା ଦରକାର । ସମାଜରୁ ଅଧର୍ମ, ଅନିଷ୍ଟ, କଳୁଷିତ ମନୋଭାବ ଦୂର ହୋଇନାହିଁ । ଗ୍ରାମେ ଗ୍ରାମେ ସତ ଶାସ୍ତ୍ରର ପ୍ରତିଷ୍ଠା ପାଇଁ ସବୁରି ପ୍ରାଣରେ ଧର୍ମଭାବ ଜାଗରଣ ହେଉ ।

ସତ୍ୟର ବିକାଶ ହେଉ । ସମସ୍ତେ ଶାନ୍ତ ଓ ସୁଖି ହୁଅନ୍ତୁ । ଏଥିପାଇଁ ଦେଶର ଧର୍ମ ପ୍ରେମୀ ଭକ୍ତମାନେ ହସ୍ତରେ ସତ୍ୟର ଆଲୋକ ଦୀପଧରି ଆଗେଇ ଆସିବା ପାଇଁ ଉତ୍କଳ ସତ୍ୟସମାଜ ତରଫରୁ ଆହ୍ୱାନ କରୁଅଛି । ଇତି ।

ଶ୍ରୀ ଗୋପାଳ ବାବା

## ପ୍ରାର୍ଥନା

(ଓଁ ଶ୍ରୀ ଗୁରୁ ଶରଣଃ)

ଏଇ ମାଟି ଦେହ ଧରେ, ମିଶିବ ମାଟିରେ,
ମନ ଗର୍ବ ଦମ୍ଭ ଯିବ କେଣେ ଚୁଲିରେ
ଭାଇ ବନ୍ଧୁ ସବୁ ମିଳି, ମାଟି ପିଣ୍ଡୁଳାକୁ ଧରି
ନଈ କୂଳେ ପାଟି ଦେବେ ବାଲିରେ (ଘୋଷା)

ସୁଖିଲ କାଠ ରୁ ଖଣ୍ଡି ଏବା କାହା ପାଇଁ
ତବେ ଭାଗ୍ୟ ନର ଯାଙ୍କୁ ଆମେ ବୋଲୁ ଥାଇଁ
ମୁଖେ ଅଗ୍ନି ଢାଳ ଭର, ସୁଖେ ଆସନ୍ତି ବାହାର
ଆଜ ଚଳ ଆସୁ ଅଛୁ କାଳରେ (ମନ) ।୧।
ବନ୍ଧୁ, କୁଟୁମ୍ବ ବସିବେ ବଗୁର ମନଂରେ,
ଛୁଇଁଲେ ଅପରେ ଛୁଆଁ ବସ ଦୂର ଦୂରେ
ଗୃହୁଁ ଗୃହୁଁ ଦନ ଗଲ ଏଗାର ଆସି ହୋଇଲ,
ଭୁଞ୍ଜିବେ ସକଳେ ମାଛ ଡାଲରେ ।୨।
ଶୁଦ୍ଧ କ୍ରିୟା ପରେ ଆଉ ନ ଭାବବେ କ୍ଷଣେ,
ଗୃଲ ଯିବେ ସେଥା ମତେ ଯେ ଯାହାର କାମେ
ସୁଖିଲ ସଂସାରେ ନାହଁ, ମରେ ମିଛେ ଛଟ ପଟ
ମାୟା ଜାଳ ଫାନ୍ଦ ଅଛୁ ଖାଲରେ ।୩।
ଥିର କର ତୋର ମନ, କହୁଛୁ ମନାଇ
ବେଳୁ ଆଶ୍ରେ କର ବାବର ଜଗତ ଗୋସାଇଁ
ହୋଇବୁ ସଦା ମୁକତ, ବଦ୍ଧୁ ପଦେ ଦଅ ମନ,
ସଂସାର ବାସନା ଯିବ ଜଳରେ [ମନ] ।୪।
**ଶ୍ରୀ ବଂଶୀଧର କବି ଶତପଥୀ**

---

ଜଣେ ଜଡଃ ସିମି ହସେ
ତତୋ ନୋଽଅଭୟ କୁରୁ
କ୍ଷମ କୁରୁ ପ୍ରଜାଭ୍ୟୋ
ଭୟନଃ ପଶୁଭ୍ୟଃ

ଶ୍ରୀ ମହନ୍ତ ନାଗା ନରୋତ୍ତମ ଦାସ

---